# ଚନ୍ଦ୍ରଶେଖର

## ପରିଚୟ

ହେ ଉତ୍କଳମାତା— ଯୋଗ୍ୟତମ ସୁତ,
ତୁମ୍ଭ ଯୋଗୁଁ ଅମ୍ଭେ ସର୍ବେ ହେଲୁଁ ପୂତ ।
ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି—
ଏକାମ୍ର କୋଣାର୍କେ ଯା କୀର୍ତ୍ତି ଭାସ୍ୱର,
ଯୋଗ୍ୟପୁତ୍ର ତୁମ୍ଭେ ସେହି ଉତ୍କଳର !

ଏଇଟା ବିଜ୍ଞାନର ଯୁଗ । ବିଜ୍ଞାନବଳରେ ଆଜ ଅସମ୍ଭବ ସମ୍ଭବ ହେଉଛି, ଯାହା ମନୁଷ୍ୟ କେବେ କଳ୍ପନା ସୁଦ୍ଧା କରି ନଥିଲା, ଆଜ ତାହା ଆଖିରେ ଦେଖିବାକୁ ହେଉଛି । ଏ ଯୁଗରେ ଯେଉଁ ଦେଶରେ ବିଜ୍ଞାନଚର୍ଚ୍ଚା ନାହିଁ, ସେ ଦେଶ ଉନ୍ନତ ନୁହେଁ, ଶିକ୍ଷିତ ନୁହେଁ । ଏହି ବିଜ୍ଞାନବଳରେ କେତେ କେତେ ଛୋଟ ଛୋଟ ଦେଶ ଆଜ ବଡ଼ ଉନ୍ନତ ପ୍ରଧାନ ଦେଶ ପାଲଟି-ଯାଇଛି ।

**ଆ**ଜି ଇଙ୍ଗ୍ଲେଣ୍ଡ, ଆମେରିକା ପ୍ରଭୃତି. ମହାଦେଶ ସାରା ପୃଥିବୀରେ ବଡ ହୋଇ ଉଠିଛନ୍ତି କାହା ଯୋଗୁଁ ?—ଏହି ବିଜ୍ଞାନ ଯୋଗୁଁ । ଏତେ ଏତେ ଅଷ୍ଟର୍ଯ୍ୟ କଳ,ଯନ୍ତ୍ର,ପୁଣି ନୂଆ ନୂଆ କଥା ବାହାର କରୁଛନ୍ତି କାହାବଳରେ ?—ଏହି ବିଜ୍ଞାନ ବଳରେ ।

**ଆ**ମ୍ଭମାନଙ୍କର ଜନ୍ମଭୂମି ଭାରତଭୂମିର ଦଶା କିନ୍ତୁ ଆଜି କହିଲେ ନ ସରେ । ଏସବୁ ବିଜ୍ଞାନଚର୍ଚ୍ଚାର ଅଭାବରୁ ଭାରତ ଆଜି ପୃଥିବୀର ସଭ୍ୟ ଉନ୍ନତ ଦେଶମାନଙ୍କ କାନ୍ଧରେ କାନ୍ଧ ପକାଇ ପାରୁ ନାହିଁ ; ମାତ୍ର ଜଗତର ସବୁ ସଭ୍ୟତା,ସବୁ ବିଦ୍ୟା, ସବୁ ଜ୍ଞାନ, ସବୁ ବିଜ୍ଞାନ—ଦିନେ ଥିଲା ଆମର ଏଇ ଭାରତରେ— ଦିନେ ଏଇ ଭାରତଭୂମି ପୃଥିବୀରେ ସବୁଠାରୁ ସଭ୍ୟ, ଉନ୍ନତ ଦେଶ ଥିଲା—ଅନ୍ୟ ଦେଶମାନେ ପ୍ରଥମେ ଆମର ଏଇ ଭାରତରୁ ଜ୍ଞାନର ଆଲୋକ ପାଇ ନିଜନିଜକୁ ଏବେ ଏତେ ଉଜ୍ଜ୍ୱଳ କରିଅଛନ୍ତି । ଏସବୁ କଥା ଭାବିବସିଲେ ଆଜି ସତ ପରି ଆଦୌ ପ୍ରତେ ହୁଏ ନାହିଁ ।

**ଭା**ରତର ପୂର୍ବଯୁଗ ବଡ଼ ଉଜ୍ଜ୍ୱଳ—ଭାରତର ପୂର୍ବ ଗୌରବ ଅତି ମହତ୍—ଭାରତର ପୂର୍ବପୁରୁଷମାନେ ଅତି ଜ୍ଞାନୀ, ଅତି ପଣ୍ଡିତ, ଅଦ୍ଭୁତ ବୈଜ୍ଞାନିକ । ସେମାନେ ବିଜ୍ଞାନ ସମ୍ବନ୍ଧରେ ଯେଉଁ ବଡ଼ ବଡ଼ ପୋଥି ଲେଖି ରଖିଦେଇ ଯାଇଛନ୍ତି, ହତଭାଗ୍ୟ ଅମ୍ଭେମାନେ ସେସବୁ ବିଷୟ ଚର୍ଚ୍ଚାକରିବା ଦୂରେ ଥାଉ, ଦିନେହେଲେ ଚିନ୍ତା କଲୁ ନାହିଁ !

**ମା**ତ୍ର କେତେ ଦୂରଦେଶୀ ଲୋକେ ଆମ ଦେଶକୁ ଆସି, ଏସବୁ ମହାଜ୍ଞାନର ଖଣି ଦେଖି, ତା ମଧ୍ୟରୁ ବିଜ୍ଞାନର ଅମୂଲ୍ୟ

ମଣିମାନ ବାହାରକରି ନିଜ ଦେଶକୁ ନେଇଗଲେ ଏବଂ ତାହାର ସାହାଯ୍ୟରେ କେତେ ଆଲୋଚନା, କେତେ ଚର୍ଚ୍ଚା, କେତେ ପରିଶ୍ରମରେ ମହା ମହା ତତ୍ତ୍ୱମାନ ଆବିଷ୍କାର କରି ନିଜ ନିଜ ଦେଶକୁ କେତେ ଉପରକୁ ଠେଲିଦେଲେ—ଆମେ କିନ୍ତୁ ଯେଉଁ ଅନ୍ଧାର ଭିତରେ ପଡିଥାଇଁ, ସେହି ଅନ୍ଧାରରେ !

ତଥାପି ଆଜି ପୂର୍ବଗୌରବ ମନେ ପକାଇ ନିଜକୁ ଗର୍ବିତ, ଭାଗ୍ୟବାନ୍ ମନେ କରିବାକୁ ହୁଏ—ପୃଥିବୀର ଏ ସଭ୍ୟ ବିଜ୍ଞାନଯୁଗରେ ସୁଦ୍ଧା ଆଜି ଛାତି ଫୁଲାଇ କହିବାକୁ ହୁଏ—ଆମରି ପୂର୍ବପୁରୁଷ ମହାପଣ୍ଡିତ ଆର୍ଯ୍ୟଭଟ୍ଟ ଆଦିମକାଳରେ କୁସୁମପୁର (ପାଟନା) ରେ ଜନ୍ମି ସର୍ବପ୍ରଥମେ ପ୍ରମାଣ କରିଥିଲେ—'ପୃଥିବୀ ବୁଲୁଥିବାରୁ ଦିନରାତି ହେଉଅଛି ।' ପୁଣି ତାର ପ୍ରାୟ ଛ ଶହ ବର୍ଷ ପରେ ସର୍ବପ୍ରସିଦ୍ଧ ବୈଜ୍ଞାନିକ ଭାସ୍କରାଚାର୍ଯ୍ୟ କର୍ଣ୍ଣାଟ ପ୍ରଦେଶର 'ବିଜୁଡ଼ବିଡ' ବା ଆଜିକାଲିକାର 'ବିଜାପୁର'ରେ ଜନ୍ମି 'ସିଦ୍ଧାନ୍ତଶିରୋମଣି' ପ୍ରଭୃତି କେତେ ମହାଗ୍ରନ୍ଥ ଲେଖି ପୃଥିବୀରେ ଅମରକୀର୍ତ୍ତି ରଖିଗଲେ । ଆଜି ସେହି ସମସ୍ତ ଗ୍ରନ୍ଥ ସାରା ପୃଥିବୀକୁ ଚମକାଇ ଦେଉଛି—ସେଥିରେ ଥିବା ମହା ମହା ତତ୍ତ୍ୱ କଥା ଦେଖି ଜଗତର ପ୍ରଧାନ ପ୍ରଧାନ ବୈଜ୍ଞାନିକ ସବୁ ଆଜି ଅବାକ୍ ହୋଇଯାଉଅଛନ୍ତି । ଆମ୍ଭ-ମାନଙ୍କ ପକ୍ଷରେ ପୁଣି ଆହୁରି ଆନନ୍ଦର କଥା, ଆହୁରି ଗର୍ବର କଥା ଏହି ଯେ, ଆର୍ଯ୍ୟଭଟ୍ଟ ଓ ଭାସ୍କରାଚାର୍ଯ୍ୟ ପ୍ରଭୃତିଙ୍କ ଏହିସବୁ ଆବିଷ୍କାରର କେତେ—କେତେ ଯୁଗ ପରେ ଯାଇ ଇଉରୋପ ପ୍ରଭୃତି ମହାଦେଶର ବୈଜ୍ଞାନିକମାନେ ଏ ସବୁ ତତ୍ତ୍ୱର ଠିକ୍ ପାଇଥିଲେ ।

ଭାସ୍କରାଚାର୍ଯ୍ୟଙ୍କ ପରେ ଭାରତରେ ଅବନତର ଯୁଗ ଆରମ୍ଭ ହେଲା । ଲୋକେ ଜ୍ଞାନ ବିଜ୍ଞାନ ଚର୍ଚ୍ଚାର ଅଭାବରୁ ଘୋର ଅନ୍ଧାରରେ ବୁଡ଼ି ରହିଲେ । ଦୀର୍ଘ ସାତଶବର୍ଷ ଏହିରୂପେ ଅତୀତ ହେଲାପରେ ପୁଣି ଏହି ପବିତ୍ର ଭାରତର ପବିତ୍ରତମ ଦେଶ ଉତ୍କଳରେ ପୃଥିବୀର ସର୍ବଶ୍ରେଷ୍ଠ ବୈଜ୍ଞାନିକ ମହାତ୍ମା ଚନ୍ଦ୍ରଶେଖର ଉଜ୍ଜ୍ୱଳ ଚନ୍ଦ୍ରରୂପେ ଉଇଁଲେ—ତାଙ୍କର ଶୁଭ୍ର ଆଲୋକରେ ଭାରତର ସମସ୍ତ ଅନ୍ଧାର ଦୂର ହେଲା—ସେହି ଆଲୋକ ପୁଣି ପୃଥିବୀର ଚାରିଆଡ଼େ ପଡ଼ି ସବୁ ଦେଶକୁ ଉଜ୍ଜ୍ୱଳ ସୁନ୍ଦର କରିଦେଲା ।

ଓଡ଼ିଶାର ଗଡଜାତମାନଙ୍କ ମଧ୍ୟରେ ଖଣ୍ଡପଡ଼ା ଗୋଟିଏ ଛୋଟ କରଦ ରାଜ୍ୟ । ଏହା ଓଡ଼ିଶାର ରାଜଧାନୀ କଟକଠାରୁ ତିରିଶ କୋଶ ପଶ୍ଚିମରେ ଅବସ୍ଥିତ । ଖଣ୍ଡପଡ଼ାର ଚାରିଆଡେ ଘୋର ଜଙ୍ଗଲ, ପାହାଡ଼ ପ୍ରଭୃତି ଘେରି ରହିଛି । ନୃସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ଏହି ଖଣ୍ଡପଡ଼ାର ରାଜା ଥିଲେ । ତାଙ୍କର ପୁରୁଷୋତ୍ତମ ଓ ଶ୍ୟାମବନ୍ଧୁ ନାମରେ ଦୁଇ ପୁଅ । ପୁରୁଷୋତ୍ତମ ବଡ ପୁଅ ଥିବାରୁ ପିତାଙ୍କ ପରେ ସେ ପୁରୁଷୋତ୍ତମ ମର୍ଦ୍ଦରାଜ ଭ୍ରମରବର ରାୟ ନାମରେ ରାଜା ହେଲେ । ଏହି ରାଜାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଭ୍ରମରବର ରାୟ ଓ ତାଙ୍କ ପୁତ୍ର ନଟବର ମର୍ଦ୍ଦରାଜ ଭ୍ରମରବର ରାୟ କ୍ରମାନ୍ୱୟରେ ପୁରୁଷୋତ୍ତମଙ୍କ ପରେ ଖଣ୍ଡପଡ଼ାର ରାଜା ହେଲେ ।

ପୁରୁଷୋତ୍ତମଙ୍କ ଭାଇ ଶ୍ୟାମବନ୍ଧୁ ସିଂହ ସାମନ୍ତ ଖୁବ୍ ପଣ୍ଡିତ, ଗୁଣୀ ଆଉ ଜ୍ଞାନୀ । ଅତିଥିର ସେବା, ଦରିଦ୍ରକୁ ଦାନ,

ଜୀବପ୍ରତି ଦୟା, ପରର ଦୁଃଖମୋଚନ, ଏଗୁଡ଼ିକ ତାଙ୍କ ହୃଦୟର ପ୍ରଧାନ ଗୁଣ ଥିଲା । ନାନା ଧର୍ମକାର୍ଯ୍ୟ ଓ ଉପାସନାରେ ତାଙ୍କର ଦିନମାନ କଟି ଯାଉଥିଲା । ଏହି ସମସ୍ତର ଫଳରେ ଚନ୍ଦ୍ରଶେଖର ତାଙ୍କର ପୁତ୍ରରୂପେ ୧୮୩୫ ଖ୍ରୀଷ୍ଟାବ୍ଦରେ ଜନ୍ମ-ଗ୍ରହଣ କଲେ ।




ପୁଅଟିଏ ପାଇଲେ ମନରେ କେତେ ଆନନ୍ଦ, କେତେ ସୁଖ ଆସେ; କିନ୍ତୁ ଶ୍ୟାମବନ୍ଧୁଙ୍କ ହୃଦୟରେ ସେ ସୁଖ ବା ଆନନ୍ଦ ସେତେବେଳେ ସ୍ଥାନ ପାଇଲା ନାହିଁ ।

ସୁଖ-ରୂପେ ଯାହା ଜନନେତ୍ରେ ଦିଶେ
ହାତେ ଅସେ ହାତୁଁ ପଡ଼ିବା ପାଇଁ ସେ ।

ଏହା ଅକ୍ଷରେ ଅକ୍ଷରେ ସତ୍ୟ । ମନୁଷ୍ୟ ଯେତେବେଳେ ଆଖି ଆଗରେ ଗୋଟାଏ ସୁଖ ଦେଖେ, ସେ ଆନନ୍ଦରେ ବିଭୋର ହୋଇଯାଏ—ସେ ସୁଖଟି ତା ପାଖରେ ରହିବ କି ନାହିଁ, ଏ କଥା ସେତେବେଳେ ସେ ଆଦୌ ଭାବେ ନାହିଁ । ତେଣୁ କିଛି ସମୟପରେ ସୁଖର ସମୟ ଶେଷ ହୋଇଗଲେ, ମନୁଷ୍ୟ ପୁଣି ଦୁଃଖରେ କାନ୍ଦି କାନ୍ଦି ହତାଶ ହୋଇଯାଏ ।

ଏଇ ହେଉଛି ମନୁଷ୍ୟମାନଙ୍କ ପ୍ରକୃତି; କିନ୍ତୁ ଶ୍ୟାମ-ବନ୍ଧୁଙ୍କ ପ୍ରକୃତି ଏ ପ୍ରକୃତିରୁ ବାହାର । ସୁଖ ଦୁଃଖ ତାଙ୍କ ନିକଟରେ

ସମାନ—ସୁଖରେ ତାଙ୍କ ହୃଦୟରେ ସୁଖ ନାହିଁ, କି ଦୁଃଖରେ ତାଙ୍କ ହୃଦୟରେ ଦୁଃଖ ନାହିଁ ;ସବୁ ସେହି ଭଗବାନଙ୍କର ଲୀଳା !

ଯେତେବେଳେ ତାଙ୍କର ପ୍ରଥମ ପୁଅଟିଏ ଜନ୍ମିଥିଲା, ସେ ଅବଶ୍ୟ ମନ ଭିତରେ ଖୁବ୍ ଆନନ୍ଦ ଭୋଗ କରିଥିଲେ — ତାଙ୍କୁ ସଂସାରଟା ସେତେବେଳେ ସୁଖପୂର୍ଣ୍ଣ ଦିଶିଥିଲା; କିନ୍ତୁ ସେହି ପୁଅଟି ଯେତେବେଳେ ବାଳୁତ ବେଳାରେ ତାର ସଂସାରଲୀଳା ସାରିଦେଇ ସ୍ୱର୍ଗକୁ ଚାଲିଗଲା, ସେତେବେଳେ ସେ ଶ୍ୟାମବନ୍ଧୁଙ୍କ ଛାତିରେ ପଥର ଲଦିଦେଇ ଗଲା । ଦୁଃଖର ସେହି ଦାରୁଣ ଧକ୍କା ଖାଇ ଏ କେତେ ବର୍ଷ ଗଲାପରେ ତାଙ୍କର ପୁଣି ଆଉ ଗୋଟିଏ ପୁଅ ଜନ୍ମି ସେ ମଧ୍ୟ ଅଳ୍ପ କେତେଦିନ ପରେ ସଂସାର-ହାଟର ସଉଦା ସାରି ଯେଉଁଠୁ ଆସିଥିଲା, ସେଇଠିକି ଚାଲିଗଲା ।

ପଛକୁ ପଛ ଦିଓଟି ପୁଅ ହରାଇ ଶ୍ୟାମବନ୍ଧୁଙ୍କ ହୃଦୟ ଫାଟିଯିବାକୁ ଲାଗିଲା । ଯେଉଁ ଈଶ୍ୱରଙ୍କ ଅନୁଗ୍ରହରୁ ସେମାନଙ୍କୁ ପାଇଥିଲେ, ସେଇ ଈଶ୍ୱର ତ ପୁଣି ତାଙ୍କୁ ତାଙ୍କଠାରୁ ଛଡ଼ାଇ ନେଇଛନ୍ତି । ଏହି ଭାବି କିନ୍ତୁ ତାଙ୍କର ଯେଉଁ ଦିନ ହେଲା, ସେ ଆଉ ମନରେ ଦୁଃଖ ରଖିଲେ ନାହିଁ—ପୁଣି ସେହି ଭଗବାନଙ୍କର ପାଦତଳେ ଶରଣ ପଶି ସୁଖ ଦୁଃଖ ସବୁ ସହିବାକୁ ଲାଗିଲେ ।

ଶ୍ୟାମବନ୍ଧୁଙ୍କ ମନକଥା କେବଳ ଏଠାରେ କୁହାଗଲା ; କିନ୍ତୁ ଦୁଇ ଦୁଇଟି ପୁଅଙ୍କୁ କୋଳରୁ ହରାଇ ମାଆର ମନ ଯେ କି ଦୁଃଖ ଯନ୍ତ୍ରଣା ଭୋଗୁଥିବ, କି ବେଦନାରେ ହୃଦୟ ଯେ ଛଟପଟ ହେଉଥିବ, ସେ କଥା ସେଇ ମାଆ ଛଡ଼ା ଆଉ କେହି ଜାଣି-ପାରିବ ନାହିଁ ।

ଏବେ ଚନ୍ଦ୍ରଶେଖରଙ୍କୁ ତୃତୀୟ ପୁତ୍ରରୂପେ ପାଇ ମା'ବାପଙ୍କ ମନରେ ସେପରି କିଛି ସୁଖ ନାହିଁ । କାହିଁକି ବା ସୁଖ କରିବେ ? ଦୁଇ ଦୁଇ ଥର ପୁଅ ଜନ୍ମ କରି କି ସୁଖ ପାଇଛନ୍ତି ? ଆଉ ଏଥର ବା କି ସୁଖ ପାଇବେ ?

**ମା**ଆ ମନ ସବୁବେଳେ ଦୁର୍ବଳ; ଏଥିପାଇଁ ସେ ପୁଅଟିକି ପାଇ ସୁଖରେ ଭାସିବେ କଣ, ଚନ୍ଦ୍ରଶେଖରଙ୍କୁ କୋଳରେ ଧରିଲା ମାତ୍ରେ ପୂର୍ବ କଥା ମନେ ପଡି ତାଙ୍କର ଦୁଇ ଆଖିରୁ ଗଳ ଗଳ ହୋଇ ଲୁହଧାର ବହିପଡ଼େ—"ତଣ୍ଟିକଣ୍ଠା ଦୁଇଟାଯାକ ତ ତଣ୍ଟିରେ ଖୁର ଚଢ଼େଇ ଦେଇ ଯାଇଚ, ଏୟାଠି ମୋର କୋଉ ଭରସା ? ସତେ ଏ ବଞ୍ଚିବ, ମଣିଷ ହବ, ଘରଦ୍ୱାର କରିବ, ମତେ ପୋଷିବ—କୋଉ ପରତେ ? ଗୁଣ୍ଡାଳ ଯମର ତ ପେଟ ପୂରିବ ନାଇଁ—ମୁଁ କୋଉଠି ନେଇ ଲୁଚେଇବି । ସତେ ଠାକୁରେ ଚନ୍ଦ୍ରକୁ ମୋର ଘଣ୍ଟି ଘୋଡ଼େଇ ରଖିବେ ! ହେ ପ୍ରଭୁ ! ତୁମ ମନ କଥା ତୁମେ ଜାଣ !" ମାଆର ଏ କଇଁ କଇଁ କାନ୍ଦ ଆଉ ଲୁହଧାର ଦେଖି ଶିଶୁଟି କିଛି ବୁଝି ପାରେ ନାହିଁ, ପାଟି ଫିଟେ ନାହିଁ, କିଛି ଜାଣିପାରେ ନାହିଁ—କେବଳ ବଲବଲ କରି ଚାହିଁ ରହେ !!

'**ଯା**ହା ପୁଅକୁ ସାପ କାମୁଡିଥାଏ, ସେ ପାଳଦଉଡ଼ି ଦେଖିଲେ ବି ଡ଼ରେ'—ଏ କଥାଟି ଭାରି ସତ । ଆମ ଦେଶରେ ବଡ଼ ପୁଅ ମରିଥିଲେ, ତା ତଳ ପୁଅକୁ 'ଅପର୍ତ୍ତିଆଣି' କହନ୍ତି । 'ଅପର୍ତ୍ତିଆଣି' ପୁଅର ନାକ ମଧ୍ୟ କେତେ ଅଞ୍ଚଳରେ ଫୋଡ଼ା-ପକାନ୍ତି । ଉପର ପୁଅକୁ ତ ଯମ ଖାଇଛି ପୁଣି କାଳେ ଏ

ପୁଅକୁ ମୁହଁ ବଢ଼େଇବ – ଏହି ଭୟରେ ଆଗରୁ ନାକ ଫୋଡ଼ି ଅସୁନ୍ଦର, ବଣ୍ଡା କରିଦିଅନ୍ତି, ଯେପରି କି ଆଉ ଯମ ସେଥିକି ଆଶା କରିବ ନାହିଁ ।

କେତେକ ବାପମା' ଅପଉଅଣିକୁ ଠାକୁରଙ୍କୁ ମଧ୍ୟ ପାଣି ଛଡ଼େଇ ଦିଅନ୍ତି—'ହେ ପ୍ରଭୁ, ଏ ମୋର ପୁଅ ନୁହେଁ— ତୁମର । ତୁମରି ନାଁରେ ପାଣି ଛଡ଼େଇଦେଇ ଷେଣ୍ଢ଼ କରିଦେଲି । ଏଣିକି ତୁମେ ଜାଣ ଯା କଥା ।' ଏଥିପାଇଁ ବାପମା ଅପଉଅଣି ପୁଅଙ୍କୁ 'ବାବାଜି', 'ଷେଣ୍ଢ଼', 'ବଇଷିମା', 'ପଠାଣ', 'ପଚରି', 'ଗନ୍ଧଅ', 'ଡମା' ପ୍ରଭୃତି ଖରାପ ନାଁରେ ମଧ୍ୟ ଡ଼ାକନ୍ତି । ଚନ୍ଦ୍ରଶେଖରଙ୍କର ଛ ଆଗ ଦୁଇ ଭାଇ ମରିଥିଲେ ; ତେଣୁ ତାଙ୍କ ଭାଗ୍ୟରେ ଠିକ୍ ଏହି କଥା ଘଟିଲା । ମା ବାପ ତାଙ୍କର 'ଚନ୍ଦ୍ରଶେଖର' ବଦଳରେ ଅପଉଅଣି ନାଁ 'ପଠାଣ' ଦେଲେ । ସେହି ରାଜବଂଶର ଲୋକଙ୍କର 'ସାମନ୍ତ' ବୋଲି ଗୋଟିଏ ଉପାଧି ଥାଏ; ତେଣୁ ତାଙ୍କୁ 'ପଠାଣି ସାମନ୍ତ' ବୋଲି ଡ଼ାକିଲେ । କ୍ରମେ ସମସ୍ତଙ୍କ ତୁଣ୍ଡରୁ ଏହି ନାଁ ବାହାରିଲା । ଲୋକେ ତାଙ୍କୁ 'ପଠାଣିସାନ୍ତ' ବୋଲି ଡ଼ାକିବାକୁ ଲାଗିଲେ । ଏହି ନାଁ ତାଙ୍କର ଚିରକାଳ ମଧ୍ୟ ରହିଲା —ଓଡ଼ିଶାର ଲୋକେ ତାଙ୍କୁ ଚନ୍ଦ୍ରଶେଖର ବୋଲି ଯେତେ ନ ଜାଣନ୍ତି, ପଠାଣିସାନ୍ତ ବୋଲି ତେତେ ଜାଣନ୍ତି ।

ଶିଶୁ ଥିଲାବେଳେ ପିଲାମାନେ ପ୍ରାୟ ସମସ୍ତେ ଭାରି ଚଞ୍ଚଳ, ଛଳବଳ ହୋଇଥାନ୍ତି; କିନ୍ତୁ ଚନ୍ଦ୍ରଶେଖର ସେପରି ନ ଥିଲେ । ସେ ଆଉ ଆଉ ପିଲାଙ୍କ ପରି ଜିନିଷ ଭଙ୍ଗାଭଙ୍ଗି, ପାଣି ଢ଼ଳାଢ଼ଳି ବା ଆଉ କିଛି ଚିଜ ଯ୍ୟାଉସ୍ୟାଉ କରିଦେଉ ନ ଥିଲେ—ଅବୁଜା

ଝାବୁଡ଼ା ଯା-ପାଟଚ-ତା ପାଇ ଟାଠିକି ସାଙ୍ଗେସାଙ୍ଗେ ପକେଇ ଦେଉ ନ ଥିଲେ । ସବୁ କଥାରେ ସେ ସ୍ଥିର । ସେହି ନିତାନ୍ତ ଶିଶୁ ଅବସ୍ଥାରୁ ସୁଦ୍ଧା ତାଙ୍କର ଅନେକ ଭଲ ଗୁଣର ଚିହ୍ନ ଦେଖା ପଡ଼ୁଥିଲା ।

ଶ୍ୟାମବନ୍ଧୁ ଦେଖିଲେ— ଆର ପୁଅ ଦିଓଟିଙ୍କ ପ୍ରକୃତିଠାରୁ ଏ ପୁଅଟିର ପ୍ରକୃତି ଢେର୍ ତଫାତ୍ ଚଗଲା ନୁହେଁ, ଧୀରସ୍ଥିର, ସବୁ କଥାରେ ବୁଦ୍ଧି ଥିଲା ପରି ଜଣା ପଡ଼ୁଛି । ଏହିସବୁ ଦେଖି ତାଙ୍କ ମନରେ ଟିକିଏ ଆଶା ଆସିଲା—ଆନନ୍ଦ ମଧ୍ୟ ଦେଖାଗଲା । କିନ୍ତୁ ସେ ଆଶା, ସେ ଆନନ୍ଦ କେବଳ ମନେ ମନେ ରଖି ସେ ଈଶ୍ୱରଙ୍କ ନିକଟରେ ପୁଅଟିର ମଙ୍ଗଳ ପାଇଁ ଦିନ ରାତି ପ୍ରାର୍ଥନା କରିବାକୁ ଲାଗିଲେ ।




କ୍ରମେ ଚନ୍ଦ୍ରଶେଖରଙ୍କର ବୟସ ବଢ଼ିଲା । ସେ ଶୈଶବ ପାରି ହୋଇ ବାଲ୍ୟ ବୟସରେ ପହଞ୍ଚିଲେ । ଏହି ବାଲ୍ୟ ସମୟହିଁ ବିଦ୍ୟାଶିକ୍ଷାର ପ୍ରଧାନ ସମୟ ; ମାତ୍ର ସେତେବେଳେ ସ୍କୁଲ କେଉଁଠି ଥିଲା ଯେ, କିଏ କେଉଁଠି ପଢିବ—ଆଉ ଖଣ୍ଡପଡ଼ା ; ସେ ତ ପୁଣି ଗଡ଼ଜାତ, ସହଜେ ଅନ୍ଧାର ମୁଲକ !

ଯାହାହେଉ ସେ ସମୟର ରୀତି ଅନୁସାରେ ତାଙ୍କୁ ପ୍ରଥମେ ଗାଁ ଅବଧାନଠାରୁ ଗାଉଁଲିପାଠ ପଢ଼ିବାକୁ ହେଲା । ଗାଉଁଲିପାଠ

କହୁଲେ କେତେଟା ମାମୁଲି କଥା--- ଅକ୍ଷର ଚିହ୍ନା ପରେ 'କେଶବ-କୋଇଲି', 'କଳାକଳେବର', 'ଗୀତଗୋବିନ୍ଦ', 'ଭାଗବତ' ପ୍ରଭୃତି ପୋଥିରୁ ଗୀତ ପଇଟା—ଅଙ୍କ ସେଇ ପଣିକିଆ, ଓଡ଼ାଙ୍କ, ଫେଡ଼ାଙ୍କ, ହରଗୁଣ, ନଳ, ଭଆଣି ଲୀଳାବତୀସୂତ୍ର ପ୍ରଭୃତି ଅଙ୍କପାଠ; ଏଇ ଏତକ କଥା ଆୟତ୍ତ କରିଦେବାକୁ ଚନ୍ଦ୍ରଶେଖରଙ୍କୁ ଖୁବ୍ ଅଳ୍ପ ସମୟ ଲାଗିଲା— ତା ପରେ ଦେଖିଲେ ଓଡ଼ିଆ ପାଠ ଶେଷ !

ସେତେବେଳକୁ ତାଙ୍କୁ ବୟସ ମୋଟେ ପାଞ୍ଚ କି ଛଅ । ସେଇ କେତେଟା ଗାଉଁଲି ପାଠ ପଢ଼ାବେଳୁ ସୁଦ୍ଧା ଜଣା ପଡ଼ିଥିଲା ଯେ—ତାଙ୍କର ଅଙ୍କ ଆଉ ସାହିତ୍ୟରେ ଭାରି ବୁଦ୍ଧି ଖେଳୁଥିଲା । ସେ ଥରେ ପଢ଼ିଗଲେ ବା ଥରେ ଶୁଣିଗଲେ ସବୁକଥା ଚଡ଼୍‌ଗୁଡ଼୍ ମନେ ରଖି ପାରୁଥିଲେ । ଏବେ ସେତକ ପାଠ ସାରିଦେଇ ସେ ଭାବିଲେ—'ଅଉ କଣ ପଢ଼ିବ ?'

ଓଡ଼ିଆ ଭାଷାରେ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ସାରଳା ଦାସ, ଜଗନ୍ନାଥ ଦାସ, ଦୀନକୃଷ୍ଣ ଦାସ ପ୍ରଭୃତି ପୁରୁଣା କବିଙ୍କର ଯେତେ ପୋଥି ତାଙ୍କ ଘରେ ଥିଲା, ସେସବୁ ଉପରେ ତାଙ୍କର ଆଖି ପଡ଼ିଲା । ସେହି ପୋଥିମାନ ଆଣି ତହୁଁ ସେ ନିଜ ଚେଷ୍ଟାରେ ସେଗୁଡ଼ିକର ଅର୍ଥ ବୁଝିବାକୁ ଲାଗିଲେ । ଗୁହୁଁ ଗୁହୁଁ ସେ ପୋଥିଯାକ ମଧ୍ୟ ଶେଷ ହୋଇଗଲା—ତା ପରେ

ତା ପରେ ଅଉ କିଛି ପାଇଲେ ନାହିଁ । ତାଙ୍କ ବଂଶରେ ଓଣା ଅଧିକେ ପ୍ରାୟ ସମସ୍ତେ ସଂସ୍କୃତ ଭାଷା ପଢ଼ିଥାନ୍ତି । ତହୁଁ ଚନ୍ଦ୍ରଶେଖର ନିଜର ଜଣେ କକେଇଙ୍କଠାରୁ ପ୍ରଥମେ ସଂସ୍କୃତ ଭାଷା ଶିଖିବାକୁ ଆରମ୍ଭ କଲେ । ସଂସ୍କୃତରେ ଟିକିଏ ପ୍ରବେଶ

ହୋଇଗଲାଣି ସେ ଆଉ କାହାର ସାହାଯ୍ୟ ଲୋଡ଼ିଲେ ନାହିଁ— ନିଜ ଯତ୍ନରେ ତେଣିକି କେତେ କାବ୍ୟ, ନାଟକ, ବ୍ୟାକରଣ, ପୁରାଣ, ସ୍ମୃତି, ବେଦ ଆୟୁର୍ବେଦ, ନ୍ୟାୟ, ବେଦାନ୍ତ ପ୍ରଭୃତି ଗ୍ରନ୍ଥମାନ କଠିଣ ପରିଶ୍ରମ ସହିତ ମନ ଦେଇ ପଢ଼ିବାକୁ ଲାଗିଲେ । ଏହିରୂପେ ତାଙ୍କର ଜ୍ଞାନ ବଡ଼ ଆଶ୍ଚର୍ଯ୍ୟଭାବରେ ନାନା ଦିଗରେ ନାନା ବିଷୟରେ ଖେଳିବାକୁ ଲାଗିଲା, ନାନା ଭାବରେ ବଢ଼ିବାକୁ ଲାଗିଲା ।

**ସେ**ତେବେଳକୁ ତାଙ୍କର ବୟସ ମୋଟେ ଦଶବର୍ଷ । ସାମାନ୍ୟ ଦଶବର୍ଷର ବାଳକ ପକ୍ଷରେ ଏତେ ଜ୍ଞାନ, ଏତେ ବିଦ୍ୟା —ଓହୋ, କି ଆଶ୍ଚର୍ଯ୍ୟ ! ଏଭଳି ଅନ୍ୟ କେଉଁଠି ତ ଦେଖା ଯାଇ ନାହିଁ ! ଆଜିକାଲି ପିଲାଏ ଦଶବର୍ଷ ବେଳକୁ ଅପର-ପ୍ରାଇମେରୀର ପାଠତକ ବି ପେଟରେ ରଖି ପାରୁ ନାହାନ୍ତି, ଅଥଚ ଚନ୍ଦ୍ରଶେଖର ସେହି ବୟସରେ ଏତେ କଠିନ ଗ୍ରନ୍ଥ, ଏତେ ଦାନ୍ତ-ଭଙ୍ଗା ପାଠ ଅପେ ଅପେ ଆଲୋଚନା କରି ବୁଝି ପାରିଲେ—ଓଃ ସେ କଥା ଭାବିଲା ବେଳକୁ ଭାବି ହେଉନାହିଁ—କଳ୍ପନାକୁ ସୁଦ୍ଧା ଆସୁ ନାହିଁ !




**ଖ**ଣ୍ଡପଡ଼ାର ରାଜବଂଶରେ ଅନେକ ପୂର୍ବରୁ ଜ୍ୟୋତିଷଚର୍ଚ୍ଚା ଓ ଜ୍ୟୋତିଷର ଆଦର ଥିଲା । ରାଜବଂଶର ପ୍ରତ୍ୟେକ ଲୋକ

ଓଣା ଅଧିକରେ କିଛି କିଛି ଜ୍ୟୋତିଷ ଜାଣନ୍ତି ବା ଜ୍ୟୋତିଷୀଟିଏ ଦେଖିଲେ ତାଙ୍କୁ ଆଦର କରନ୍ତି ।

ଚନ୍ଦ୍ରଶେଖରଙ୍କ କକେଇମାନେ ଜ୍ୟୋତିଷ ବିଷୟ ଜାଣିଥିଲେ । ଜ୍ୟୋତିଷ ଦୁଇପ୍ରକାର—ଫଳିତ ଜ୍ୟୋତିଷ ଓ ଗଣିତ ଜ୍ୟୋତିଷ । ମଣିଷଙ୍କର କୋଷ୍ଠି ଦେଖି ବା ହାତ ଦେଖି ଗ୍ରହନକ୍ଷତ୍ରମାନଙ୍କର ଅବସ୍ଥା ଅନୁସାରେ ଗଣନା ଦ୍ୱାରା ଯେଉଁ ଫଳାଫଳ ବା ଭଲମନ୍ଦ କୁହାଯାଏ ତାହାର ନାମ ଫଳିତ ଜ୍ୟୋତିଷ; ଆଉ ଆକାଶରେ ଗ୍ରହନକ୍ଷତ୍ର, ସୂର୍ଯ୍ୟଚନ୍ଦ୍ର ପ୍ରଭୃତିଙ୍କ ଗତି ଓ ସେମାନଙ୍କ ସମ୍ବନ୍ଧରେ ଗଣନାଦ୍ୱାରା ନାନା କଠିଣ କଠିଣ ତତ୍ତ୍ୱ ଜାଣିବା ବା ସ୍ଥିର କରିବାର ନାମ ଗଣିତ ଜ୍ୟୋତିଷ । ଏହି ଗଣିତ ଜ୍ୟୋତିଷ ବଡ଼ କଷ୍ଟ । ସେପରି ପଣ୍ଡିତ ଓ ଜ୍ଞାନୀ ନ ହେଲେ ଏହି ବିଦ୍ୟା ଆୟତ୍ତ କରିବା ଆଦୌ ସହଜ ନୁହେଁ । ମାତ୍ର ଫଳିତଜ୍ୟୋତିଷ ଗଣିତଜ୍ୟୋତିଷ ତୁଳନାରେ ଖୁବ୍ ସହଜ। ଆମ ଦେଶରେ ନାହାକ ଅବଧାନପ୍ରଭୃତି ଏହି ଫଳିତଜ୍ୟୋତିଷ ସାହାଯ୍ୟରେ କେତେ କେତେ ଆଗତ ଭବିଷ୍ୟ କଥା ମଧ୍ୟ କହିଥାନ୍ତି ।

ଚନ୍ଦ୍ରଶେଖରଙ୍କ କକେଇମାନେ ଏହି ଫଳିତ ଜ୍ୟୋତିଷ ବିଦ୍ୟା ଭଲ ଜାଣିଥିଲେ । ସଂସ୍କୃତ ସାହିତ୍ୟରେ ଅଗାଧ ଜ୍ଞାନ ସଂଗ୍ରହ କରି ଚନ୍ଦ୍ରଶେଖର ସେହି କକେଇମାନଙ୍କଠାରୁ ଫଳିତ ଜ୍ୟୋତିଷ ଶିଖିବାକୁ ପ୍ରଥମେ ମନ ବଳାଇଲେ । କକେଇମାନଙ୍କ ମଧ୍ୟରୁ ଜଣେ ଯାଙ୍କର ଏ କୌତୂହଳ ଓ ଆଗ୍ରହ ଦେଖି ବଡ଼ ଖୁସି ହେଲେ ଏବଂ ସେହି ଦିନଠୁଁ ପ୍ରତ୍ୟହ କିଛି କିଛି ଶିଖାଇବାକୁ ଲାଗିଲେ ।

ଜ୍ୟୋତିଷ ପାଠ ବଡ ମଜାର ପାଠ । ଏଥିରେ କେତେ କେତେ ଆଶ୍ଚର୍ଯ୍ୟ କଥା ଜାଣିବାକୁ ହୁଏ । ତେଣୁ ଥରେ ସେଥିରେ ପଶିଲେ, କିମିତି ଆଜି କିଛି ନୂଆ କଥା ଶିଖିବି, ଏହି କଥା ବରାବର ମନେ ହୁଏ । ଯେତେ ଶିଖୁଥିବ, ସେତେ ପୁଣି ନୂଆ ଶିଖିବାକୁ ପ୍ରବଳ ଆଗ୍ରହ ଓ କୌତୂହଳ ଜନ୍ମିବ ।

ସେହି ରାଜବଂଶରେ ଜ୍ୟୋତିଷ ବିଦ୍ୟାର ଅନେକ ପୋଥି ପୂର୍ବରୁ ଥିଲା । ଚନ୍ଦ୍ରଶେଖର କବିରାଜଙ୍କ ସାହାଯ୍ୟରେ ଫଳିତ ଜ୍ୟୋତିଷର ପୋଥିମାନ ପଢି ସବୁ ବୁଝିଲେ ଓ ଅଳ୍ପ-କାଳ ମଧ୍ୟରେ ଅନେକ କଥା ଶିଖିଗଲେ । ତାଙ୍କର ଜ୍ୟୋତିଷ ପରି ଗହନ ବିଦ୍ୟାରେ ଏପରି ଆଶ୍ଚର୍ଯ୍ୟ ଶକ୍ତି ଓ ଜ୍ଞାନ ହୋଇ-ଯିବାର ଦେଖି କବିରାଜମାନେ ଅବାକ୍ ହୋଇଗଲେ ।

ଗ୍ରାମ ଗ୍ରାମ ଆଖପାଖ ଗ୍ରାମଅଡ଼େ ଚନ୍ଦ୍ରଶେଖରଙ୍କ ନାମ ବାଜିଗଲା । ସେତେବେଳକୁ ତାଙ୍କର ବୟସ ମୋଟେ ବାରବର୍ଷ । ସାମାନ୍ୟ ବାର ବର୍ଷର ବାଳକ—ପୁଣି ରାଜବଂଶର, ଏପରି ସୁନ୍ଦର ଭାବରେ ସବୁ ଭୂତଭବିଷ୍ୟ କହି ପାରୁଛନ୍ତି ଶୁଣି ଲୋକେ ତାହା ପରଖି କରିବା ପାଇଁ ତାଙ୍କ ପାଖକୁ ଧାଇଁଲେ । ଚନ୍ଦ୍ରଶେଖର ସେମାନଙ୍କର ଜାତକ ପ୍ରଭୃତି ଦେଖି ଏଡ଼େ ବିଶୁଦ୍ଧ ଭାବରେ ଗଣନା କରି ଫଳାଫଳ କହିବାକୁ ଲାଗିଲେ ଯେ, ଲୋକେ ସେହି ପ୍ରତ୍ୟକ୍ଷ କଥାମାନ ଶୁଣି ତାଙ୍କୁ ଧନ୍ୟ ଧନ୍ୟ କଲେ ।



## ଆକାଶ ପର୍ଯ୍ୟବେକ୍ଷଣ

ଭୂମ୍ୟଙ୍କ ନଗାରେ ନଭ ଦର୍ଶନ
ଦେଖାନ୍ତି ନକ୍ଷତ୍ର ପୁରୁଷେ ତାଣ୍ଡବ ।

ଚନ୍ଦ୍ରଶେଖରଙ୍କର ମନ ଅଳ୍ପ ଫଳିତ ଜ୍ୟୋତିଷରେ ମାନିଲା ନାହିଁ—କିପରି ଗଣିତ ଜ୍ୟୋତିଷ ଶିଖିବେ, ସେ ବିଷୟରେ ବଡ଼ ବଡ଼ ପଣ୍ଡିତଙ୍କ ଗ୍ରନ୍ଥସବୁ ପଢ଼ିବେ, ଏଥିପାଇଁ ମନ ବଡ଼ ବ୍ୟାକୁଳ ହୋଇ ଉଠିଲା । ତାଙ୍କ କକେଇ ଆକାଶରେ କେତେକ ଗ୍ରହ ନକ୍ଷତ୍ରଙ୍କୁ କେବଳ ଚିହ୍ନିଥିଲେ । ଏବେ ଚନ୍ଦ୍ରଶେଖର ତାଙ୍କର ସାହାଯ୍ୟରେ ସେହି କେତୋଟି ଗ୍ରହ ନକ୍ଷତ୍ରଙ୍କୁ ଚିହ୍ନିବାକୁ ଲାଗିଲେ ।

ଜ୍ୟୋତିଷରେ ଲଗ୍ନ,ନକ୍ଷତ୍ର ଏଗୁଡ଼ିକ ହେଉଛି ପ୍ରଧାନ କଥା । ଏଗୁଡ଼ିକ ଖୁବ୍ ଭଲ କରି ନ ଶିଖିଲେ କଦାପି କୃତୀ ହୋଇ ପାରିବ ନାହିଁ । ଏଗୁଡ଼ିକର, ବିଶେଷତଃ ଲଗ୍ନର ଗଣନା ଯଦି ଭୁଲ ହୋଇଯାଏ, ତାହା ହେଲେ ସବୁ ପଣ୍ଡ ହୋଇଯିବ । ଏ କଥା ଚନ୍ଦ୍ରଶେଖର ଭଲରୂପେ ଜାଣିଲେ ଏବଂ ପ୍ରଥମେ ସେହି ଲଗ୍ନ ବିଷୟରେ କିପରି ବିଶୁଦ୍ଧ ଜ୍ଞାନ ଜନ୍ମିବ, ସେଥିପାଇଁ ମନପ୍ରାଣ ଢାଳିଦେଲେ ।

ଗ୍ରହ ଓ ନକ୍ଷତ୍ରମାନେ କିଏ କେତେବେଳେ କେଉଁଠାରେ ଉଦୟ ହେଉଛନ୍ତି, କେଉଁ ବାଟେ ଦେଇ କିପରି କୁଆଡ଼େ ଗତି କରୁଛନ୍ତି ଓ ଶେଷରେ କେଉଁଠାରେ ଯାଇ କେତେବେଳେ

ଅସ୍ତ ହେଉଛନ୍ତି; ଏସବୁ ବିଷୟ ସେ ସର୍ବପ୍ରଥମେ ସ୍ୱଚକ୍ଷୁରେ ଉଜାଗର ରହି ପ୍ରତିଦିନ ଖାଲି ଆଖିରେ ଦେଖିବାକୁ ଲାଗିଲେ । ଖାଲି ଏତିକି ଦେଖିଲେ ତ ହେବ ନାହିଁ ଲଗ୍ନଟି ଠିକରୂପେ ଜାଣିବାକୁ ହେବ । କଳେଇମାନେ କେହି ତ ଜ୍ୟୋତିଷର ସେପର୍ଯ୍ୟନ୍ତ ଯାଇ ନାହାନ୍ତି । ତେବେ ତାଙ୍କର ଏ ଇଚ୍ଛା ପୂର୍ଣ୍ଣ କରିବ କିଏ ?

ଚନ୍ଦ୍ରଶେଖର ଦେଖିଲେ—ତାଙ୍କ ଘରେ ପ୍ରାଚୀନ ବୈଜ୍ଞାନିକମାନଙ୍କର ସୂର୍ଯ୍ୟସିଦ୍ଧାନ୍ତ, ସିଦ୍ଧାନ୍ତ ଶିରୋମଣି ପ୍ରଭୃତି ଅନେକ ଜ୍ୟୋତିଷ ଗ୍ରନ୍ଥ ତାଳପତ୍ର ପୋଥିରେ ଲେଖାହୋଇ ରହିଛି । ଏହା ଦେଖି ସେ ବଡ ଆନନ୍ଦିତ ହେଲେ ଏବଂ ସେହି ପୋଥିମାନ ଆଣି ତାହା ସାହାଯ୍ୟରେ ଲଗ୍ନଜ୍ଞାନ ଅର୍ଜିବାପାଇଁ ଚେଷ୍ଟା କଲେ; ମାତ୍ର ସେ ତ ବଡ଼ କଷ୍ଟ ବିଷୟ, କାହା ସାହାଯ୍ୟରେ ବୁଝିବେ ? କିଏ ଗୁରୁ ହୋଇ ଶିଖାଇବ ? ସେତେବେଳେ ସେପରି କେହି ଗୋଟିଏ ଜାଣିବାର ହୋଇ ନଥିଲା, ତେଣୁ ଶେଷରେ ସେ ସେହି ଗ୍ରନ୍ଥମାନଙ୍କ ତଳେ ଥିବା ଟୀକା ସାହାଯ୍ୟରେ ନିଜେ ନିଜେ ଅର୍ଥ ବୁଝିବାକୁ ଚେଷ୍ଟା କଲେ ।

ଏହି କାର୍ଯ୍ୟରେ ତାଙ୍କର ଅନେକ ସମୟ କଟିଗଲା; ମାତ୍ର ସେହି ଅକ୍ଳାନ୍ତ ପରିଶ୍ରମ ପରେ ତାଙ୍କର ସମସ୍ତ ଚେଷ୍ଟା, ସମସ୍ତ ଯତ୍ନ ସଫଳ ହେଲା—ମନର ବାସନା ପୂର୍ଣ୍ଣ ହେଲା । ପନ୍ଦରବର୍ଷ ବୟସ ବେଳକୁ ତାଙ୍କର ଲଗ୍ନ ବିଷୟରେ ପୂର୍ଣ୍ଣ ଜ୍ଞାନ ଆସିଲା । ଏଣିକି ଆଉ କୌଣସି ଭାବନା ନାହିଁ ।

**ତା** ପରେ ଚନ୍ଦ୍ରଶେଖର ସେହି ଜ୍ଞାନକୁ କାର୍ଯ୍ୟରେ ଲଗାଇ ଆପଣାକୁ ଆପେ ପରୀକ୍ଷା କରିବାକୁ ଲଗିଲେ । ଆକାଶରେ ଗ୍ରହ ପ୍ରଭୃତିଙ୍କର ଲଗ୍ନ ଠିକ୍ କରିବାକୁ ଆରମ୍ଭ କଲେ । ତାଙ୍କର ଲଗ୍ନଗଣନା ଶେଷ ହେଲା । ସେହି ଗଣନା ଅନୁସାରେ ସେ ଠିକ୍ କଲେ ଯେ, ଅମୁକ ଗ୍ରହ ଏତେଟା ସମୟରେ ଉଦୟ ହେବ, ଅମୁକ ଗ୍ରହ ଅମୁକ ବେଳେ ଅସ୍ତ ହେବ···ଇତ୍ୟାଦି ।

ଏହି ସମସ୍ତ ଫଳକୁ ସେ ଆକାଶରେ ସେହି ସେହି ଗ୍ରହମାନଙ୍କ ସଙ୍ଗେ ମିଳାଇବାକୁ ଲାଗିଲେ ; ମାତ୍ର ଏ କି ଅଦ୍ଭୁତ କଥା—ଫଳ ସଙ୍ଗେ ଗ୍ରହଙ୍କ ବେଳ ଯେ ମିଳିଲା ନାହିଁ ! ଯେଉଁଠି ଯେଉଁ ଗ୍ରହ ଯେତେବେଳେ ଥିବ ବୋଲି ଠିକ୍ କଲେ, ଦେଖିଲାବେଳକୁ ସେ ଗ୍ରହ ସେଠି ସେତେବେଳକୁ ନାହିଁ ! ଯେଉଁ ଗ୍ରହ ଯେତେବେଳେ ଯେଉଁଠି ଉଦୟ ହେବ, ଦେଖିଲାବେଳକୁ ସେଠି ସେତେବେଳେ ସେ ଉଦୟ ହେଉ ନାହିଁ ! ଯେଉଁ ଗ୍ରହ ଯେତେଟାବେଳେ ଯେଉଁ ସ୍ଥାନରେ ଅସ୍ତ ଯିବାର କଥା, ସେ ସ୍ଥାନରେ ସେତେଟାବେଳେ ସେ ଅସ୍ତ ଗଲା ନାହିଁ ! "ଓଃ, ଏ କି ବିଷମ ! ତେବେ କଣ ମୋର ଗଣନା ଭୁଲ୍ ? ନା, ତା ତ ହୋଇ ନ ପାରେ ! ଆଉ ତେବେ କଣ ପ୍ରାଚୀନ ପଣ୍ଡିତମାନଙ୍କର ଗଣନା ଭୁଲ୍ ! ଏଡ଼େ ଏଡ଼େ ପ୍ରସିଦ୍ଧ ସିଦ୍ଧାନ୍ତ ଗ୍ରନ୍ଥମାନ ଲେଖି ସେମାନେ କଣ ତା ମଧ୍ୟରେ ଏଭଳି ଭୁଲ୍ କରି ରଖିଯାଇଛନ୍ତି ! ନା, ସେ କି ତ ସମ୍ଭବ ଜଣା ଯାଉ ନାହିଁ ! ତେବେ ପ୍ରକୃତ ଭୁଲ୍ କାହାର ? କିଏ ଏକଥା କହିବ ? କାହାଦ୍ୱାରା ଏ ବିଷମ ସମସ୍ୟାର ନିଷ୍ପତ୍ତି ହେବ ?"




ଦେଖ ନାହାନ୍ତି କି  ମନେ ବହୁ ଲଢ଼
କି ଥିଲା ଏ ରାଜ୍ୟ  କି ହୋଇଛି ଅଜ !

**ଚ**ନ୍ଦ୍ରଶେଖରଙ୍କ ମନ ବଡ଼ ଅସ୍ଥିର ହେଲା, କିଛି ଠିକ୍ କରି ପାରିଲେ ନାହିଁ—"ଏତେ ପରିଶ୍ରମ, ଏତେ ସାଧନା କଣ ଶେଷରେ ତେବେ ପଣ୍ଡ ହୋଇଯିବ ! ଅଚ୍ଛା, ଆଉ ଥରେ ଗଣନା କରି ଦେଖେଁ, ଏଥର କଣ ଫଳାଫଳ ଜଣା ପଡୁଛି ! କାଲେ ସେଥର ଗଣନାରେ କଣ ଭୁଲ୍‌ଭାଲ୍ ଥିବ !"

**ତା**ହାପରେ ପୁଣି ଥରେ ସେ ଗଣନା କଲେ; ଦେଖିଲେ, ସେଇ ଏକ ଫଳ ! "ନା, ଏଥର ବି ହେଲା ନାହିଁ ! ଅଚ୍ଛା, ପୁଣି ଆଉ ଥରେ !" ଗଣନା ପୁଣି ଥରେ ହେଲା । ଫଳ—ଯେଉଁ କଥାକୁ ସେହି କଥା ! ଏହାପରେ ସେ କେତେ କେତେ ଥର ଯେ ଗଣନା କଲେ, ତାର ସଂଖ୍ୟା ନାହିଁ । ଶେଷରେ ନିରାଶ ହୋଇ ଭାବିଲେ—"ନା, ଆଉ ଏ ଖାଲି ହିସାବରେ କିଛି ଫଳ ନାହିଁ । ନିଜ ଆଖିରେ ଯାହା ଦେଖିବି, ତାହାହିଁ ଠିକ୍—ସେଥିରେ ଭୁଲ୍ ରହିବାର କୌଣସି କାରଣ ନାହିଁ ।"

**ଆ**ଖିରେ ତ ଦେଖିବେ ! ଆଖିରେ ତ କେତେ ଥର ଦେଖି ଦେଖି କିଛି ଅଳକୂଳ ପାଇଲେ ନାହିଁ—ଆଉ ପୁଣି ଦେଖିବେ କଣ ? ଖାଲି ଆଖିରେ ଦେଖିବାରୁ ଠିକେ କଣ

ଏପାଖ ସେପାଖ ଉଣେଇଶି ବିଶି ହୋଇଯାଉଛି, ଫଳ ଠିକ୍ ହେଉ ନାହିଁ; ଏଥିର ଯଦି କୌଣସି ଯନ୍ତ୍ର ସାହାଯ୍ୟରେ ଦେଖନ୍ତେ, ତାହେଲେ ଭୁଲ୍ ରହିବାର ଭୟ ଅଦୌ ରହନ୍ତା ନାହିଁ ।

ତାପରେ କାର୍ଯ୍ୟ ହେଲା ଯନ୍ତ୍ରର ସନ୍ଧାନ । ନିଜ ଘରେ, ଅନ୍ୟ ଅନେକ ଆଡ଼େ ଆଖି ପକେଇଲେ, କେଉଁଠି ହେଲେ ଯନ୍ତ୍ର, ନା ଯନ୍ତ୍ରର ପତା ପାଇଲେ ନାହିଁ । ମନରେ ବଡ଼ ଦୁଃଖ ଆସିଲା—"ହାୟ, ଏ ଦେଶ ଦିନେ କଣ ଥିଲା, ଆଜି ପୁଣି କଣ ହୋଇଛି ! ଯେଉଁ ଦେଶରେ ପୃଥିବୀର ସର୍ବଶ୍ରେଷ୍ଠ ଜ୍ୟୋତିଷୀ-ମାନେ ଜନ୍ମି ଦିନେ ଈଶ୍ୱରଙ୍କ ରାଜ୍ୟରେ ଅଦ୍ଭୁତ ତତ୍ତ୍ୱ ଅଦ୍ଭୁତ ଲୀଳା ଖେଳାଉଥିଲେ, ଆଜି ସେହି ଦେଶରେ ଗ୍ରହଟାଏ ଦେଖିବାପାଇଁ ସାମାନ୍ୟ ଯନ୍ତ୍ରଟାଏ ସୁଦ୍ଧା ମିଳୁ ନାହିଁ ! ଆଜି ସେହି ପୂର୍ବପୁରୁଷମାନେ ସ୍ୱର୍ଗରେ ବସି ନିଜ ଦେଶର ଏ ଦୁର୍ଦ୍ଦଶା, ଏ ଦୁରବସ୍ଥା, ଜ୍ୟୋତିଷ ପ୍ରତି ଲୋକଙ୍କର ଏ ଅନାସ୍ଥା ଦେଖି ମନରେ ଘୋର ଲଜ୍ଜା, ଘୋର ଅପମାନ ଅନୁଭବ କରୁ ନ ଥିବେ କି ? ସେହି ଚିର ଅମର ପିତୃପୁରୁଷଙ୍କର ଏ ଲଜ୍ଜା, ଏ ଅପମାନ କଣ ଦୂର କରାଯାଇ ନ ପାରେ ? କାହିଁକି ନ ହେବ—ମୁଁ ମୋ ସାମାନ୍ୟ ଶକ୍ତିରେ, ସାମାନ୍ୟ ଜ୍ଞାନରେ ଯାହା ହେବ, ତା କରିବାକୁ ଛାଡ଼ିବି କାହିଁକି ?"

ଏହି ସମୟରେ ତାଙ୍କର ମନେ ପଡ଼ିଗଲା—"ଅଚ୍ଛା, ପ୍ରାଚୀନ ସିଦ୍ଧାନ୍ତ ଗ୍ରନ୍ଥମାନଙ୍କରେ ତ ଯନ୍ତ୍ରସବୁ ତିଆରି କରିବାର ଉପାୟ ଲେଖାହୋଇ ରହିଛି ! ତେବେ ସହଜରେ ତ ତାହାର

ସାହାଯ୍ୟରେ ମୁଁ ଯନ୍ତ୍ର ତିଆରି କରି ପାରିବି ! ଆନନ୍ଦରେ ଚନ୍ଦ୍ରଶେଖରଙ୍କ ହୃଦୟ ନାଚିବାକୁ ଲାଗିଲା । ସେ ସାଙ୍ଗେ ସାଙ୍ଗେ ପ୍ରାଚୀନ ସିଦ୍ଧାନ୍ତ ପୋଥି ଆଣି ସେଥିରେ ଲେଖାଥିବା ପ୍ରଣାଳୀ ଅନୁସାରେ ଯନ୍ତ୍ର ତିଆରି କରିବାକୁ ଆରମ୍ଭକଲେ । ବଡ଼ ଆଶ୍ଚର୍ଯ୍ୟ କଥା—ଯେଉଁ ଅମୂଲ୍ୟ ଯନ୍ତ୍ରର ମୂଲ୍ୟ ଏ ବିଜ୍ଞାନ ଯୁଗରେ ଶହ ଶହ ହଜାର ହଜାର ଟଙ୍କା ହେଉଛି, ଚନ୍ଦ୍ରଶେଖର ସେହି ଯନ୍ତ୍ରକୁ ସାମାନ୍ୟ କେତେଖଣ୍ଡି ବାଉଁଶ କାଠି ସାହାଯ୍ୟରେ ତିଆରି କରିଦେଲେ । ଓଃ, ଆମ ଦେଶର ପ୍ରାଚୀନ ବୈଜ୍ଞାନିକଙ୍କ ମସ୍ତିଷ୍କ କେତେ ବଡ଼ ! ସାମାନ୍ୟ ଖର୍ଚ୍ଚରେ ସେମାନେ କି ମହାମୂଲ୍ୟ ଯନ୍ତ୍ର ତିଆରିର କୌଶଳ ଆମଲାଗି ଲେଖି ରଖି ଯାଇଛନ୍ତି !

ଅଳ୍ପ ଦିନ ମଧ୍ୟରେ ସେ ଯନ୍ତ୍ରଯୋଡ଼ାଏ ତିଆରି କରି-ଦେଲେ—ଗୋଟିକର ନାଁ 'ସ୍ୱୟଂବହ ଯନ୍ତ୍ର' ଓ ଆରଟିର ନାଁ 'ମାନଯନ୍ତ୍ର' । ଏହି ଯନ୍ତ୍ର ଦୁଇଟି ବେଶ୍ ଛୋଟ ଛୋଟ—ଯେଉଁଠିକି ଯିବ, ମନ କଲେ ହାତରେ ଧରି ନେଇ ଯାଇ ପାରିବ । 'ମାନ-ଯନ୍ତ୍ର'ଟି ଦେଖିବାକୁ ଠିକ୍ ଇଂରାଜିର—'ଟି' ଅକ୍ଷର ପରି । ଏହା ସାହାଯ୍ୟରେ ବେଳ ଠିକ୍ କରିହେବ । ଆଉ 'ସ୍ୱୟଂବହଯନ୍ତ୍ର' ସାହାଯ୍ୟରେ କେଉଁ ଗ୍ରହ କେଉଁ ଗ୍ରହଠାରୁ କେତେ ଦୂରରେ ଅଛି, ସହଜରେ ମାପି ହୋଇ ପାରିବ ।

ଯନ୍ତ୍ର ଦୁଇଟି ହାତରେ ପଡ଼ିଲାପରେ ଚନ୍ଦ୍ରଶେଖର ମହା ଆନନ୍ଦରେ ସାରାରାତି ଜାଗି ଆକାଶରେ ଗ୍ରହ ନକ୍ଷତ୍ରଙ୍କୁ ଜଗିବାକୁ ଲାଗିଲେ । ଗ୍ରହନକ୍ଷତ୍ର ଯିବେ ଆଉ କୁଆଡ଼େ ?—ସବୁ ତାଙ୍କ ଆଖି ଆଗରେ ଧରା ପଡ଼ିଗଲେ । ଚନ୍ଦ୍ରଶେଖର ଏହି ଦୁଇ

ଯନ୍ତ୍ର ସାହାଯ୍ୟରେ କେଉଁ ଗ୍ରହ କେଉଁଠାରେ ଅଛି, କେଉଁ ନକ୍ଷତ୍ର କେଉଁଠାରେ ଅଛି, କାହାଠାରୁ କାହାର ଦୂରତା କେତେ, ଆଉ କେଉଁ ଗ୍ରହ କେତେବେଳେ ଉଦୟ ହେଉଛି, କେତେବେଳେ ଅସ୍ତ ହେଉଛି, କେଉଁ ନକ୍ଷତ୍ର କେତେବେଳେ ଉଦୟ ହେଉଛି, କେତେବେଳେ ଅସ୍ତ ହେଉଛି—ସବୁ ବିଷୟ ନିଜ ଆଖିରେ ଦେଖି, ନିଜ ହାତରେ ମାପି ଠିକ୍ କରିଦେଲେ । ଦେଖିଲେ ନିଜେ ଯାହା ପୂର୍ବଥର ଗଣନା କରି ଠିକ୍ କରିଥିଲେ ସେହି ଫଳ ଅନୁସାରେ ଗ୍ରହ-ନକ୍ଷତ୍ରମାନଙ୍କର ଉଦୟ ଅସ୍ତ ଓ ଅବସ୍ଥାନର ସମୟ ଓ ସ୍ଥାନ ଠିକ୍ ମିଳି ଯାଉଅଛି ।

ଏବେ ଆଉ ସନ୍ଦେହର କୌଣସି କାରଣ ନାହିଁ—ତାଙ୍କର ଗଣନାହିଁ ସାର, ଠିକ୍—ପୂର୍ବ ସିଦ୍ଧାନ୍ତମାନଙ୍କର ଗଣନା ନିଶ୍ଚୟ ଅସାର, ଭୁଲ୍ । ନିଜ ଆଖିରେ ପ୍ରତ୍ୟକ୍ଷ ଯାହା ଦେଖିବ, ତହିଁରେ ଆଉ ଭୁଲ ରହିବ କେଉଁଠି—ଘରେ ବସି ଖାଲି ଖଡ଼ି ଘୋରି ଘୋରି କଳ୍ପନାରେ ଯାହା ଦେଖିବ, ସେଇଥିରେହିଁ ଭୁଲ ରହିବ ସିନା !




ଆମ୍ଭମାନଙ୍କର ଜନ୍ମଭୂମିରେହିଁ ଧର୍ମର ପ୍ରଥମ ଜନ୍ମ ଓ ପ୍ରଥମ ଲୀଳା । ଭାରତ ଚିରକାଳ ଏହି ଧର୍ମଭାବପାଇଁ ଜଗତରେ ପ୍ରସିଦ୍ଧ । ଭାରତବାସୀ ପ୍ରତ୍ୟେକ ହିନ୍ଦୁ ତାର ପ୍ରତିଦିନକୁ ଧର୍ମରେ କଟାଇବାକୁ ଇଚ୍ଛା କରେ ।

ହିନ୍ଦୁର ହୃଦୟ ଧର୍ମରେ ଗଢ଼ା । ସେ ସେଥିପାଇଁ ସବୁବେଳେ ଧର୍ମବଳରେ ଚଳିବାପାଇଁ ଗୋଟାଏ ଆଶ୍ରୟ ଖୋଜେ । କେବଳ ଏଥିପାଇଁ ହିଁ ଆମ ଦେଶରେ ପାଞ୍ଜିର ସୃଷ୍ଟି । ପାଞ୍ଜି ହିନ୍ଦୁର ପ୍ରଧାନ ସଂଖାଳି—ଏକମାତ୍ର ଆଶ୍ରୟ । ସକାଳଠାରୁ ତା ଆରଦିନ ସକାଳଯାଏ ଚବିଶ ଘଣ୍ଟା ଯାକ କେତେବେଳେ କିପରି ଚଳିବାକୁ ହେବ, କେଉଁ ଦିନ କି ଖାଦ୍ୟ ଖାଇବାକୁ ହେବ, କେଉଁ ଦିନ କି ବ୍ରତ, ଉପାସ କରିବାକୁ ହେବ କେଉଁ ତିଥି କେଉଁ କାର୍ଯ୍ୟ ପାଇଁ ଶୁଭ ବା ଅନୁକୂଳ—ଏ ସମସ୍ତ କଥା ବଡ଼ ସରଳଭାବରେ ତହିଁରେ ଲେଖାଥାଏ । ଏଭଳି ଧର୍ମଭାବର ପ୍ରବେଶ ପୃଥିବୀର ଅନ୍ୟ କୌଣସି ଦେଶର ଅନ୍ୟ କୌଣସି ଜାତିରେ ନାହିଁ ।

**ସେ** ସମୟରେ ଆଜିକାଲି ପରି ଏତେ ଛାପାଖାନା ନ ଥିଲା କିମ୍ବା ଆଜିକାଲି ପରି ପାଞ୍ଜିସବୁ ଛାପା ହୋଇ ବିକ୍ରି ହେଉ ନ ଥିଲା । ସେତେବେଳେ ପୁରୀରେ ଗୋଟିଏ ଜ୍ୟୋତିଷ ବଂଶ ଥିଲା । ସେମାନେ 'ଖଡ଼ୀ' ଦ୍ୱାରା ଅର୍ଥାତ୍ ଗଣନା ଦ୍ୱାରା ଜ୍ୟୋତିଷ ବିଦ୍ୟାରେ ଖୁବ୍ ଧୁରନ୍ଧର ଥିଲେ ବୋଲି ରାଜାଙ୍କଠାରୁ 'ଖଡ଼ୀରତ୍ନ' ଉପାଧି ପାଇଥିଲେ ।

**ଯେଉଁ** ସମୟର କଥା କୁହାଯାଉଅଛି, ସେ ସମୟରେ ଏହି ବଂଶର ଜଣେ ଖଡ଼ୀରତ୍ନଙ୍କ ଦ୍ୱାରା ପ୍ରତିବର୍ଷ ପାଞ୍ଜି ତିଆରି ହେଉଥିଲା । ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ଅବଧାନମାନେ ତାଙ୍କଠାରୁ ପ୍ରତିବର୍ଷର ପାଞ୍ଜି ସୁନ୍ନିଆଁ ପୂର୍ବରୁ ଯାଇ ତାଳପତ୍ରରେ ଲେଖି ଆଣୁଥିଲେ । ସେହି ପାଞ୍ଜି ଓଡ଼ିଶାର ଅଧିକାଂଶ ଅଡ଼େ

ଚଳୁଥିଲା । ଏହାଛଡ଼ା ପୁରୀର ଜଗନ୍ନାଥ ମନ୍ଦିରର ସବୁ ସେବା-ପୂଜା ମଧ୍ୟ ଏହି ଖଡ଼ୀରତ୍ନ ପାଞ୍ଜି ଅନୁସାରେ ହେଉଥିଲା ।

ଚନ୍ଦ୍ରଶେଖର ଦେଖିଲେ—ସେ ପାଞ୍ଜି ଭୁଲ୍ । କାରଣ ତାହା ପୂର୍ବର ସେହି ଭୁଲ୍ ଗଣନା ଅନୁସାରେ ତିଆରି ହେଉଅଛି । ପାଞ୍ଜିରେ ଯେଉଁ ଦିନ ଯେଉଁ ତିଥି ପଡ଼ୁଅଛି, ଯେଉଁ ଗ୍ରହର ଯେତେ ଲଗ୍ନବେଳା ବୋଲି ଲେଖାଅଛି, ତାହା ଆଦୌ ଠିକ୍ ନୁହେଁ । ସାରା ଭାରତବର୍ଷର ଏକମାତ୍ର ଇଷ୍ଟଦେବତା ମହାପ୍ରଭୁ ଜଗନ୍ନାଥ—ତାଙ୍କ କାର୍ଯ୍ୟ ପୁଣି ଏଇଭଳି ଗୋଟାଏ ଭୁଲ୍ ପାଞ୍ଜି ଅନୁସାରେ ହେଉଛି—ଏ କଥା ଜାଣି ଚନ୍ଦ୍ରଶେଖରଙ୍କ ମନରେ ବଡ଼ ଦୁଃଖ ଆସିଲା । କିପରି ପାଞ୍ଜିର ଭୁଲ୍‌ମାନ ସଂଶୋଧନ କରାଯିବ, ସେଥିପାଇଁ ଲାଗିପଡ଼ିଲେ ।

ଏହାମଧ୍ୟରେ କଟକର ଜଣେ ଛାପାଖାନାର ମାଲିକ ଖଡ଼ୀରତ୍ନଙ୍କ ସେହି ପାଞ୍ଜିକି ଓଡ଼ିଆରେ ଛାପି ପ୍ରକାଶ କଲେ । ଲୋକେ ତାଳପତ୍ରରେ ଲେଖା ପାଞ୍ଜି ବଦଳରେ ସୁନ୍ଦର କାଗଜରେ ଛାପା ପାଞ୍ଜି ପାଇଲେ । ଫଳରେ ଘରେ ଘରେ ଏହି ପାଞ୍ଜି ଶୋଭା ପାଇଲା ; ମାତ୍ର ଚନ୍ଦ୍ରଶେଖର ଏହା ଦେଖି ଆହୁରି ଦୁଃଖରେ ବୁଡ଼ିଗଲେ—“ଓଃ ! ଏ ଯେ ସର୍ବନାଶ ଆସି ପହଞ୍ଚିଲା । ଦେଶ ତମାମ୍ ସମସ୍ତେ ତ ଭୁଲ୍ ପାଞ୍ଜିରେ ମାତିଗଲେ, ଏତେବେଳେ ସଂଶୋଧନ କରି ଆଉ ଗୋଟାଏ ନୂଆ ପାଞ୍ଜି ବାହାର କଲେ ତାକୁ ପଚାରିବ କିଏ, ବିଶ୍ୱାସ କରିବ କିଏ ?”

ଚନ୍ଦ୍ରଶେଖର କିନ୍ତୁ ସାହସ ବା ଉଦ୍ୟମ ହରାଇଲେ ନାହିଁ ; ବରଂ ଦ୍ୱିଗୁଣ ସାହସ, ଦ୍ୱିଗୁଣ ଉଦ୍ୟମରେ ସଙ୍ଗେ ସଙ୍ଗେ ପାଞ୍ଜି

ସଂଶୋଧନ କାର୍ଯ୍ୟରେ ଲାଗିଗଲେ । ଅଳ୍ପଦିନ ପରେ ନିଜ ବିଶୁଦ୍ଧ ଗଣନା ଅନୁସାରେ ଗୋଟିଏ ବିଶୁଦ୍ଧ ପାଞ୍ଜି ତିଆରି କରି ତାଙ୍କୁ ନେଇ ପୁରୀରେ ପହଞ୍ଚିଲେ । ଖଡ଼ୀରତ୍ନ ପାଞ୍ଜିରେ ଯେଉଁ ଯାହା ଭୁଲ୍ ଥିଲା, ସବୁ ସେ ଦେଖାଇଦେଲେ ।

ମହାବିପତ୍ତି କଥା—କେଉଁ ପାଞ୍ଜି ଭୁଲ୍, କେଉଁ ପାଞ୍ଜି ଠିକ୍, କିପରି ଜଣାଯିବ ? ଶେଷରେ ପୁରୀମନ୍ଦିରରେ ଗୋଟିଏ ବଡ଼ ସଭା ବସିଲା । ଭାରତର ବହୁଆଡ଼ୁ ବଡ଼ ବଡ଼ ଜ୍ୟୋତିଷୀ ଓ ପଣ୍ଡିତମାନେ ନିମନ୍ତ୍ରିତ ହୋଇ ସେହି ସଭାକୁ ଆସିଲେ । ତହିଁରେ ଏହି ପାଞ୍ଜି ବିଷୟ ବିଚାର କରାଗଲା । ଶେଷରେ ସମସ୍ତେ ସ୍ୱୀକାର କଲେ ଯେ, ଚନ୍ଦ୍ରଶେଖରଙ୍କ ଗଣନାହିଁ ଏକାବେଳକେ ଠିକ୍ ସେଥିରେ ଟିକେ ହେଲେ ଭୁଲ୍ ଭ୍ରାନ୍ତି ନାହିଁ । ତେଣୁ ତାଙ୍କର ପାଞ୍ଜି ଅନୁସାରେ ସେହି ଦିନୁଁ ଜଗନ୍ନାଥ ମହାପ୍ରଭୁଙ୍କ ସେବା ପୂଜା ଚାଲିଲା । ସେହି ଦିନୁ ଖଡ଼ୀରତ୍ନ ଚନ୍ଦ୍ରଶେଖରଙ୍କ ଗଣନା ଅନୁସାରେ ନିଜର ପାଞ୍ଜି ମଧ୍ୟ ତିଆରି କଲେ ।

ଏବେ ଓଡ଼ିଶାରେ ଖଡ଼ୀରତ୍ନ ପାଞ୍ଜି ଓ ସାମନ୍ତ ପାଞ୍ଜି, ଏ ଦୁଇ ପ୍ରକାର ଚାଲୁଅଛି । ସାମନ୍ତ ପାଞ୍ଜିଟି ଚନ୍ଦ୍ରଶେଖରଙ୍କ ଗଣନା ଅନୁସାରେ ତାଙ୍କ ପୁଅ ଗଦାଧର ସିଂହ ସାମନ୍ତ ତିଆରି କରୁଛନ୍ତି ଏବଂ ଖଡ଼ୀରତ୍ନ ପାଞ୍ଜିକି ମଧ୍ୟ ଚନ୍ଦ୍ରଶେଖରଙ୍କ ଗଣନା ଅନୁସାରେ ସେହି ଖଡ଼ୀରତ୍ନ ବଂଶର ଲିଙ୍ଗରାଜ ଖଡ଼ୀରତ୍ନ ତିଆରି କରୁଛନ୍ତି ।

ଏହାପରେ ଜଣେ ବଙ୍ଗାଳୀ ବଙ୍ଗଳାରୁ ଆସି ଚନ୍ଦ୍ରଶେଖରଙ୍କ ପାଖରେ ଶିଷ୍ୟ ହୋଇ ରହିଲେ ଏବଂ ତାଙ୍କଠାରୁ ଜ୍ୟୋତିଷ

ବିଷୟରୁ ଭଲରୂପେ ଶିଖି ନିଜ ଦେଶରେ ଯାଇ ଚନ୍ଦ୍ରଶେଖରଙ୍କ ପାଞ୍ଜି ଅନୁସାରେ ଗୋଟିଏ ବଙ୍ଗଳା ପଞ୍ଜି ପ୍ରକାଶ କଲେ । ସେହି ପାଞ୍ଜି ବଙ୍ଗଳାରେ ଖୁବ୍ ଆଦର ପାଇଲା— ହଜାର ହଜାର ବିକି ହେଲା । ଏପର୍ଯ୍ୟନ୍ତ ମଧ୍ୟ ସେ ପାଞ୍ଜି ବଙ୍ଗଳାରେ ଚଳୁଛି ।



## ରାଜାଙ୍କ ସହିତ ମନୋମାଳିନ୍ୟ

ଯାର ଈର୍ଷା ଯୋଗୁଁ     ତୁମର ଏ ଦଶା
ତେବେହି ରଜା ହେଲେ     ମନେ ସେହି ରୋଷ ।
ରତନ କାହିଁ ସେ     ଶୋଭିବ କିରୀଟେ
ଅନାଦରେ ତାହା     ଦଳେ ପାଦପୀଠେ ।
ମୋତି ମୂଲ୍ୟ କାହିଁ     ଜାଣିବ ଶବର ,
ମୋତି ପିନ୍ଧି କରେ     ଗୁଞ୍ଜାରେ ଆଦର ।

ଏତେ ଦିନେ ଚନ୍ଦ୍ରଶେଖରଙ୍କ ଦିନରାତି, ମାସ ମାସ, ବର୍ଷ ବର୍ଷର ଅକ୍ଳାନ୍ତ ପରିଶ୍ରମ, ଅକ୍ଳାନ୍ତ ଉଦ୍ୟମ ସଫଳ ହେଲା। ଓଡ଼ିଶାରେ ବିଶୁଦ୍ଧ ପାଞ୍ଜି ଏତେଦିନେ ଚଳିଲା, ଏହାହିଁ ତାଙ୍କ ଆନନ୍ଦର ଏକମାତ୍ର କାରଣ । ଏହି କାର୍ଯ୍ୟ ଯୋଗୁଁ କେତେ ଆଡ଼େ ତାଙ୍କ ନାମ ବାଜିଗଲା, ତାଙ୍କ ଘରେ କେତେନାହିଁ କେତେ ଲୋକ ଆସି ରୁଣ୍ଡ ହେଲେ । କିଏ କେତେ କଥା ପଚାରନ୍ତି, କେତେ ବିଷୟ ବୁଝି ତାଙ୍କୁ ଧନ୍ୟ ଧନ୍ୟ କହନ୍ତି । ଦେଖୁ ଦେଖୁ ପୁଣି ଏପରି ହୋଇଗଲା ଯେ, ତେଣେ ରାଜାଙ୍କ ପାଖରେ ଯେତେ ଲୋକ ହୁଅନ୍ତି, ତା ଅପେକ୍ଷା ୟାଙ୍କ ପାଖରେ ଦଶ ବାରଗୁଣ ଲୋକ

ହୁଅନ୍ତି । ତାଙ୍କ ଘରଟିରେ ସବୁବେଳେ ମଣିଷ ଗଦା—ସତେ ଅବା କିଛି ଉତ୍ସବ ଲାଗିଛି !

ଖଣ୍ଡପଡ଼ା ରାଜ୍ୟର ଯେତେ ପ୍ରଜା, ତାଙ୍କ ପାଖରେ ଚନ୍ଦ୍ରଶେଖର ଏଣିକି ସାକ୍ଷାତ୍ ଦେବତା ପରି ପୂଜା ପାଇଲେ । ରାଜାଙ୍କୁ ଯେତେ ସେମାନେ ଭକ୍ତି ନ କରନ୍ତି, ଯେତେ ସମ୍ମାନ ନ କରନ୍ତି, ଚନ୍ଦ୍ରଶେଖରଙ୍କୁ ସେତେ ଭକ୍ତି କରନ୍ତି, ସେତେ ସମ୍ମାନ କରନ୍ତି । ରାଜ୍ୟତମାମ୍ କି ପୁରୁଷ, କି ସ୍ତ୍ରୀ, ସମସ୍ତେ ତାଙ୍କୁ ଏଣିକି 'ରାଜଜ୍ୟୋତିଷ' ବୋଲି ଡାକିବାକୁ ଲାଗିଲେ ।

ଚନ୍ଦ୍ରଶେଖରଙ୍କର ଏ ଖ୍ୟାତି, ଏ ପ୍ରଶଂସା, ଏ ସୁନାମ, ଏ ସମ୍ମାନରେ କିନ୍ତୁ ଖଣ୍ଡପଡ଼ା ରାଜାଙ୍କ ହୃଦୟ ସହିଲା ନାହିଁ । ସେ ଦେଖିଲେ ଯେ ରାଜା ହେଲେ ସୁଦ୍ଧା ତାଙ୍କୁ କେବଳ ଖଣ୍ଡପଡ଼ା ରାଜ୍ୟଟିର ଲୋକମାନଙ୍କ ଛଡ଼ା ଆଉ କେହି ଜାଣନ୍ତି ନାହିଁ, ଚିହ୍ନନ୍ତି ନାହିଁ, କି ଖାତିର କରନ୍ତି ନାହିଁ; ତାଙ୍କର ନାମ କେବଳ ସେହି ରାଜ୍ୟଟି ମଧ୍ୟରେ ଆବଦ୍ଧ,ତାଙ୍କର ପ୍ରଶଂସା କେବଳ କେତେ ଜଣ ତାଙ୍କ ଖୋସାମଦିଆ ପାଖଲୋକଙ୍କ ଛଡ଼ା ଆଉ କାହାରି ମୁହଁରେ ନାହିଁ—ଅଥଚ ଚନ୍ଦ୍ରଶେଖର ରାଜବଂଶର ଜଣେ ସାଧାରଣ ଲୋକ ହେଲେ ସୁଦ୍ଧା ତାଙ୍କ ନାମ, ତାଙ୍କ ଗୁଣ, ତାଙ୍କ ଖ୍ୟାତି କି ଖଣ୍ଡପଡ଼ା ରାଜ୍ୟରେ, ପୁଣି କି ଖଣ୍ଡପଡ଼ା ବାହାରେ ସମଗ୍ର ଓଡ଼ିଶାରେ ସମସ୍ତଙ୍କ ମୁହଁରେ ଘୋଷିତ ହେଉଛି । ଏହା ଛଡ଼ା ତାଙ୍କୁ ପୁଣି ଜଗନ୍ନାଥ ମନ୍ଦିରରେ କେତେ କେତେ ମୂଳକର କେତେ କେତେ ପଣ୍ଡିତ କେତେ କେତେ ପ୍ରଶଂସା ନ କଲେ ! ଏହିସବୁ ଭାବି ରାଜାଙ୍କ ପେଟଭିତର ହିଂସା, ଈର୍ଷା, ଆଉ ରାଗରେ ଜଳିଗଲା ।

କିନ୍ତୁ ଏହା ରାଜାଙ୍କ ପକ୍ଷରେ ଘୋର ନୀଚତାର ଚିହ୍ନ; କାରଣ ତାଙ୍କର ରାଜବଂଶରୁ ଯେତେବେଳେ ଜଣେ ଲୋକ ବାହାର ଏତେ ନାମ କରୁଛନ୍ତି , ଗୁରୁଆଡ଼େ ପୂଜା ପାଉଛନ୍ତି, ସେ କଣ ତାଙ୍କର ଲାଭ ନୁହେଁ ? ଚନ୍ଦ୍ରଶେଖରଙ୍କ ନାମ, ଖ୍ୟାତି ଓ ପ୍ରଶଂସା ସଙ୍ଗେ ସଙ୍ଗେ ଖଣ୍ଡପଡ଼ା ରାଜବଂଶର କଣ ସମ୍ମାନ ବଢ଼ିଗଲା ନାହିଁ ? ମାତ୍ର କଣ ହେବ, ସେ ରାଜାଙ୍କର ହୃଦୟ ବଡ଼ ଛୋଟ, ବଡ଼ ନୀଚ, ବଡ଼ ସଂକୀର୍ଣ୍ଣ । ସେ ଏସବୁ କଥା କିଛୁ ବୁଝିପାରୁ ନାହାଁନ୍ତି !

ନଅରଭିତରେ ସବୁବେଳେ ଲୋକଗୁଡ଼ାକ ଜମା ହୋଇ-ଥିବେ, ଏଇଟା ରାଜାଙ୍କୁ ବଡ଼ ଖରାପ ଲାଗିଲା, ବଡ଼ ଅଡ଼ୁଆ ଲାଗିଲା । ପୁଣି ରାଜବଂଶର ଜଣେ ଲୋକ ହୋଇ ସବୁବେଳେ ନିହାତି ଛୋଟ ଲୋକ ଅବଧାନ ନାହାକଙ୍କ ପରି ଜାତକ ଦେଖୁଥିବ, ଖଡ଼ୀ ଘୋର ଘୋର୍, ଗାଁ ଗଣ୍ଡାର ଡେଲି ନାହିଁ, ଗୁଡ଼ିଆ ନାହିଁ, ବାଉରି ନାହିଁ, କଣ୍ଡରା ନାହି , ସମସ୍ତଙ୍କର ଜାତକ ଦେଖୁଥିବ, ସମସ୍ତଙ୍କ ସାଙ୍ଗରେ ମିଶୁଥିବ, ଏହାଦ୍ୱାରା ରାଜବଂଶ ନାଁରେ କଣ କଳଙ୍କ ଆସୁ ନାହିଁ—ତାଙ୍କ ନିଜର ମାନସମ୍ମାନ କଣ କମିଯାଉ ନାହିଁ ? ଏହି ସବୁ ଛୋଟକଥା ଭାବି ଭାବି ରାଜା ମନେ ମନେ ବଡ଼ ଅସ୍ତବ୍ୟସ୍ତ ହୋଇ ଉଠିଲେ । କିପରି ଚନ୍ଦ୍ରଶେଖରଙ୍କ ଖ୍ୟାତି ଆଉ କୁଆଡ଼େ ନ ହେବ, ଏଥିପାଇଁ ସେ ନାନା ଯୋଗାଡ଼, ନାନା ଷଡ଼ଯନ୍ତ୍ର କରିବାକୁ ଲାଗିଲେ ।

ସେହି ରାଜାଙ୍କର ନାମ ନଟବର ମର୍ଦ୍ଦରାଜ ଭ୍ରମରବର ରାୟ । ସେ ପିଲାଦିନେ ବଡ଼ ଦୁଷ୍ଟ, ବଡ଼ ଚଗଲା ଥିଲେ । କ୍ରମେ

ତାଙ୍କର ସେହି ଦୁଷ୍ଟାମି ବଡ଼ ବେଶି ହୋଇଥିଲା ଏବଂ ତାର ଫଳରେ ସେ ତାଙ୍କର ପିତା ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଭ୍ରମରବର ରାୟଙ୍କର ବିଷଦୃଷ୍ଟିରେ ପଡ଼ିଲେ । ରାଜା କୃଷ୍ଣଚନ୍ଦ୍ର ତାଙ୍କପ୍ରତି ବଡ଼ ବିରକ୍ତ ହୋଇ ଶେଷରେ ତାଙ୍କୁ ଘରୁ ବାହାର କରିଦେଲେ । ସେତେବେଳେ ଚନ୍ଦ୍ରଶେଖରଙ୍କ ପିତା ଶ୍ୟାମବନ୍ଧୁ ସିଂହ ସାମନ୍ତ ନିରାଶ୍ରୟ ନଟବରଙ୍କୁ ନିଜ ଘରେ ଆଣି ଆଶ୍ରୟ ଦେଇଥିଲେ, ତାଙ୍କୁ ନିଜ ପୁଅପରି ଅତି ସ୍ନେହରେ ପାଳିଥିଲେ । ସେ ସମୟରେ ଚନ୍ଦ୍ରଶେଖର ଓ ନଟବର ସବୁ ସମୟରେ ଏକାଠି ବସାଉଠା କରନ୍ତି, ଏକାଠି ଖିଆପିଆ କରନ୍ତି, ଏକାଠି ଖେଳ କଉତୁକ କରନ୍ତି; ମାତ୍ର ଏବେ ରାଜା ହୋଇ ସେହି ନଟବର ପିଲାଦିନର ସବୁ କଥା ଭୁଲିଗଲେ । ଯାହା ଘରେ ଆଶ୍ରୟ ପାଇ,ଯାହା ସଙ୍ଗରେ ଖେଳିପଢ଼ି ସେ ଆଜି ରାଜା ବୋଲାଉଛନ୍ତି, ତାଙ୍କୁ ପୁଣି ବିଷ ଆଖିରେ ଦେଖିଲେ, ତାଙ୍କର ଅନିଷ୍ଟ କରିବାପାଇଁ ଦିନରାତି ଛକି ରହିଲେ । ଏଭଳି ଲୋକ କି କେବେହେଲେ ମନୁଷ୍ୟ ନାମର ଯୋଗ୍ୟ—ରାଜପଦ ତ ଦୂରର କଥା !

ନିଜର ପୁତୁରା ରାଜା ନଟବରଙ୍କର ଏସବୁ କୁଭାବ ଆଉ ମନ୍ଦ ପ୍ରକୃତି ଦେଖି ଚନ୍ଦ୍ରଶେଖର କିନ୍ତୁ ତିଳେ ହେଲେ ବିଚଳିତ ହେଲେ ନାହିଁ—ସେ ନିଜ କାର୍ଯ୍ୟରେ ପୂର୍ବପରି ବରାବର ଲାଗି ପଡ଼ିଲେ । ଯାହାର ଭଗବାନ୍ ସ୍ୱୟଂ ସହାୟ , ମର୍ତ୍ତ୍ୟର ସାମାନ୍ୟ ମନୁଷ୍ୟ ତାର କଣ କରି ପାରିବ ?

## ସାଧନାର ମହାଫଳ

ସିଦ୍ଧାନ୍ତଦର୍ପଣ          ହେବ ନାହିଁ ଲଖ୍ୟ
ନରଦେହେ ଥିବ          ଯାବତ ହୃଦୟ ।

ଏଣିକି ଚନ୍ଦ୍ରଶେଖରଙ୍କ ପ୍ରାଣ, ମନ, ଦେହ, ସବୁ ଆହୁରି ଗଭୀରଭାବରେ ସେହି ଆକାଶସଙ୍ଗରେ ମିଶି ରହିବାକୁ ବ୍ୟାକୁଳ ହେଲା । ସେ ସବୁବେଳେ ଭାବିବାକୁ ଲାଗିଲେ—ଆକାଶର ସବୁ ଗ୍ରହ ନକ୍ଷତ୍ର ଚନ୍ଦ୍ର ତାଙ୍କ ସହିତ କିପରି କଥାବାର୍ତ୍ତା କରନ୍ତେ ! ଏହାହିଁ ହେଲା ଶେଷକୁ ତାଙ୍କ ପ୍ରାଣର ପ୍ରବଳ ପିପାସା । ଏଥି-ପାଇଁ ସେ କଠିଣ ସାଧନାରେ ବୁଡ଼ି ରହିଲେ । ରାତି ଗୁଡ଼ି ପହରଯାକ ଖାଡ଼ା ଖାଡ଼ା ରହି ଆପଣାର ସେହି ଯନ୍ତ୍ର ଦୁଇଟି ସାହାଯ୍ୟରେ ଆକାଶକୁ ଚାହିଁ ଚାହିଁ କେତେ କେତେ ନୂଆ ନୂଆ କଥା ଜାଣିବାକୁ ଲାଗିଲେ, କେତେକେତେ ନୂଆ ନୂଆ ଗ୍ରହ ନକ୍ଷତ୍ରଙ୍କୁ ଦେଖିବାକୁ ଲାଗିଲେ । ସେତେବେଳେ ତାଙ୍କ ପ୍ରାଣରେ ଯେ କି ଆନନ୍ଦର ଶୁଭ୍ର ଝରଣା ଖେଳିଯାଉଥିଲା, ତାହା ଆମ୍ଭମାନଙ୍କ କଳ୍ପନାକୁ ସୁଦ୍ଧା ଆସିବ ନାହିଁ ।

ତାଙ୍କର ବୟସ ତେଇଶି ବର୍ଷ ହେଲା । ଦେଖି ଦେଖି ଯେତେ ତଥ୍ୟ ଆବିଷ୍କାର କଲେ, ଆକାଶର ଯେତେ ଦୃଶ୍ୟ ଦେଖିଲେ, ସେଗୁଡ଼ିକ ସେ ଏଣିକି ଟିପି ରଖିବାକୁ ମନ କଲେ ।

ସେ ସମୟରେ ମଫସଲମାନଙ୍କରେ ବିଶେଷତଃ ଗଡ଼ଜାତ ମୁଲକରେ ଆଜିକାଲିକା ପରି କାଗଜ କଲମର ଚଳଣି ଆଦୌ

ନଥିଲା । ଲୋକେ ତାଳପତ୍ର ଉପରେ ଲେଖନ ଦ୍ୱାରା ଲେଖୁଥିଲେ । ଚନ୍ଦ୍ରଶେଖରଙ୍କର ମଧ୍ୟ ସେହି ତାଳପତ୍ର ପୋଥିଟାଏ, ଆଉ ଲେଖନା ଖଣ୍ଡେ ଏଣିକି ସବୁବେଳେ ସହଚର ହୋଇ ପାଖେ ପାଖେ ରହିଲା । ଯେତେବେଳେ ଯାହା ଦେଖିଲେ ଯାହା ଜାଣିଲେ, ନିଜର ସମସ୍ତ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ସେହି ତାଳପତ୍ର ପୋଥିରେ ଲେଖି-ରଖିବାକୁ ଲାଗିଲେ । ଯଦି କେତେବେଳେ ଦେଖନ୍ତି ଯେ, ପାଖରେ ତାଳପତ୍ର ଲେଖନ ନାହିଁ,ତାହେଲେ ଖଡ଼ି ବା ଅଙ୍ଗାର ଯାହା ପାନ୍ତି ତାହା ସାହାଯ୍ୟରେ କାନ୍ଥରେ ସାଙ୍ଗେ ସାଙ୍ଗେ ଲେଖି ପକାନ୍ତି ।

ଏହିରୂପେ ତିନି ବର୍ଷ କାଳ ଗ୍ଲଲିଗଲା । ତିନି ବର୍ଷ କାଳ ତାଙ୍କ ସାଧନାର ଫଳାଫଳ ତାଳପତ୍ରରେ ମଧ୍ୟ ଟିପାହୋଇ ରହିଗଲା । ତିନିବର୍ଷ ପରେ ସେ ଭାବିଲେ—' ଖାଲି ଟିପି ରଖିଲେ କଣ ହେବ, ଖାଲି ଟିପାଠାରୁ କିଏ କଣ ବୁଝିବ ? ପୁଣି ଏ ଟିପାଯାକ ତ ସବୁ ଅଡୁଆ ମଡୁଆ ହୋଇ ଏଠି ସେଠି ଲେଖାଯାଇଛି, ସଜାଡ଼ି ନ ଲେଖିଲେ ବା ଫଳ କଣ ?'

ଏହା ଭାବି ସେ ଗତ ତିନିବର୍ଷର ସମସ୍ତ ଟିପା—ଯାହା ଏଠି ସେଠି, ଏଣେ ତେଣେ,ଆଗ ପଛ, ପଛ ଆଗ ହୋଇ ଲେଖା ହୋଇଥିଲା, ସମସ୍ତକୁ ଗୋଟିଏ ଶୃଙ୍ଖଳାରେ ପକାଇ ଯାହା ପରେ ଯେଉଁ ବିଷୟ ରହିବ, ଯେଉଁ ପର୍ଯ୍ୟବେକ୍ଷଣର ଫଳ ପରେ ଯେଉଁ ପର୍ଯ୍ୟବେକ୍ଷଣ ଫଳ ରହିବ, ସେହି ଅନୁସାରେ ଆଗ ଲେଖିପକାଇଲେ । ଏହା ମଧ୍ୟରେ ସଂସ୍କୃତ ଗ୍ରନ୍ଥମାନ ପଢ଼ି ପଢ଼ି, ଆଲୋଚନା କରି କରି,ତାଙ୍କର ସଂସ୍କୃତ ସାହିତ୍ୟ ଉପରେ ଏତେ ଦଖଲ ଆସିଯାଇଥିଲା ଯେ, ଆଉ ସଂସ୍କୃତ ଶ୍ଳୋକ ରଚନାରେ ଏପରି ଏକ ଅଦ୍ଭୁତ ଶକ୍ତି ଜନ୍ମିଯାଇଥିଲା ଯେ, ସେ ଯେତେବେଳେ

ଯାହା ଦେଖିଥିଲେ ବା ଯାହା ମନ ମଧ୍ୟରେ ଭାବୁଥିଲେ, ସାଙ୍ଗେ ସାଙ୍ଗେ ମୁହେଁ ମୁହେଁ ତାକୁ ସଂସ୍କୃତରେ ଶ୍ଳୋକ ତିଆର କରି ଦେଇ ପାରୁଥିଲେ । ଏଣୁ ସେ ଗଲା ତିନିବର୍ଷ କଠିନ ସାଧନାର ଯେଉଁ ଫଳକୁ ଶୃଙ୍ଖଳଭାବରେ ଲେଖିଥିଲେ ତାକୁ ଖାଲି ସେହିପରି ନ ଲେଖି ସଂସ୍କୃତ ଶ୍ଳୋକରେ ଖୁବ୍ ସାହିତ୍ୟ ଭାଷାରେ ଲେଖି ରଖିବାକୁ ମନ କଲେ ।

ଚନ୍ଦ୍ରଶେଖରଙ୍କର ଏହି ସାଧୁ ସଂକଳ୍ପ ସଙ୍ଗେ ସଙ୍ଗେ କାର୍ଯ୍ୟରେ ପରିଣତ ହେବାକୁ ବସିଲା । ସେ ରାତି ଜାଗି ଯାହା ଫଳ ପାଆନ୍ତି, ନିଜର ଯନ୍ତ୍ର ସାହାଯ୍ୟରେ ଦେଖି ଓ ଗଣନା କରି ଯାହା ସ୍ଥିର କରନ୍ତି, ସେ ସମସ୍ତକୁ ଦିନରେ ଶ୍ଳୋକ ଆକାରରେ ଲେଖି ପକାନ୍ତି । ଏହିରୂପେ ପୁଣି ତିନିବର୍ଷ ଆସି ଶେଷହେବାକୁ ବସିଲା । ଦିନରାତି ଚବିଶଘଣ୍ଟା ମଧ୍ୟରୁ କୌଣସିଦିନ ଏକମିନିଟ୍ ସୁଦ୍ଧା ତାଙ୍କର ଏହି ଛଅବର୍ଷରୁ ବୃଥା ନଷ୍ଟ ହୋଇ ନାହିଁ । ନିଜର ଖିଆପିଆ ଦେହ ସ୍ୱାସ୍ଥ୍ୟ, ସୁଖ ସ୍ୱାଚ୍ଛନ୍ଦ୍ୟ ସବୁ ଭୁଲି ସେ ଅତି କଠୋର ସାଧନାରେ ପୂର୍ବକାଳର ସେହି ସାଧୁ ଯୋଗୀ ଋଷିଙ୍କ ପରି ବୁଡି ରହିଲେ—ସେ ସାଧନା ଏ ଯୁଗରେ ମନୁଷ୍ୟ ଶକ୍ତିର ଅତୀତ ପରି ବୋଧହୁଏ ! ତାଙ୍କର ସଂକଳ୍ପ—ସାଧନାର ଫଳ ନ ପାଇବା ପର୍ଯ୍ୟନ୍ତ ଏହିପରି ଲାଗିଥିବେ । ଦେହ,ପ୍ରାଣ,ମନ, ଲକ୍ଷ୍ୟ, ଧ୍ୟାନ, ଧାରଣା ସବୁ ସେହି ଆକାଶରେ; ଆକାଶଛଡା, ଶୂନ୍ୟଛଡ଼ା ଅନ୍ୟ ଆଶ୍ରୟ, ଅନ୍ୟ ଭରସା କିଛି ନାହିଁ ।

ଶେଷରେ ପରମାତ୍ମା ପରମେଶ୍ୱରଙ୍କ ପୂର୍ଣ୍ଣ ଆଶୀର୍ବାଦରୁ ମହାତ୍ମା ଚନ୍ଦ୍ରଶେଖରଙ୍କ ସମସ୍ତ ଆଶା ପୂର୍ଣ୍ଣ ହେଲା—ସମସ୍ତ

ସଂକଳ୍ପ କାର୍ଯ୍ୟରେ ପରିଣତ ହେଲା । ସେ ଗଲ୍ପ ଛ'ବର୍ଷର ସମସ୍ତ ଅଦ୍ଭୁତ ଅକାଶତତ୍ତ୍ୱ ଶ୍ଳୋକ ଅକାରରେ ଲେଖି ଶେଷ କଲେ ଏବଂ ତାଙ୍କୁ ତେଶ ବର୍ଷ ହେଲବେଳକୁ ପ୍ରଥମ ଲେଖାଟି ପୂର୍ଣ୍ଣ ହୋଇ ବାହାରିଲା । ସେ ତାଙ୍କ କଠିନ ତପସ୍ୟାର ଫଳ, ମହା ସାଧନାର ସିଦ୍ଧି, ଜୀବନର ସାର ସମ୍ବଳ ସେହି ମହାଗ୍ରନ୍ଥଟିର ନାମ ରଖିଲେ—**ସିଦ୍ଧାନ୍ତ ଦର୍ପଣ**




ସଦା ଅଦ୍ଧା ରୋଗ ଯନ୍ତ୍ରଣାରେ କ୍ଷୀଣ
କ୍ଷୀଣ ଅଙ୍ଗଶିଖ ଦର୍ଶେ କ ମଳନ !

ଚନ୍ଦ୍ରଶେଖର ଅସୀମ ଜ୍ୟୋତିଷ ସାଗର ମନ୍ଥନ କରି 'ସିଦ୍ଧାନ୍ତ ଦର୍ପଣ' ରୂପ ଅମୃତକୁ ପୃଥିବୀର ବିଜ୍ଞାନ ରାଜ୍ୟରେ ଆଣି ଥୋଇଦେଲେ ସତ୍ୟ, କିନ୍ତୁ ଦୀର୍ଘ ଛଅବର୍ଷର ଅବିଶ୍ରାନ୍ତ ପରିଶ୍ରମ ଓ ସାଧନାର ଫଳରେ ତାଙ୍କର ସ୍ୱାସ୍ଥ୍ୟ ଏକାବେଳେ ଭାଙ୍ଗିଗଲା ।

ଦିନକ ମଧ୍ୟରେ ଅନ୍ତତଃ ଛ ସାତ ଘଣ୍ଟା ନ ଶୋଇଲେ ସ୍ୱାସ୍ଥ୍ୟ ଭଲ ରହେ ନାହିଁ । ଏହା ଜାଣି ସୁଦ୍ଧା ଚନ୍ଦ୍ରଶେଖର ଦିନ ନାହିଁ, ରାତି ନାହିଁ ସବୁବେଳେ ଚେଇଁ ରହିଲେ । ତା ପରେ ଛବର୍ଷ ଧରି ଜ୍ୟୋତିଷର କଠିନ କାର୍ଯ୍ୟରେ ମାତିବାଦ୍ୱାରା ଦେହ ଓ ମନ ଉଭୟ ଉପରେ ସବୁବେଳେ ଚାପ ପଡିଲା—ଉଭୟର ଶକ୍ତି ଉପରେ ଭୟାନକ କ୍ଷତି ଆସିଲା । ପୁଣି ସେ ନିଜେ ତ ଧର୍ମ ବିଷୟରେ ବଡ଼ ନିଷ୍ଠାପର, ବଡ଼ ଗୋଣ୍ଡି । ସେଥିପାଇଁ ହିନ୍ଦୁଶାସ୍ତ୍ର

ଅନୁସାରେ ମାସକରୁ ପ୍ରାୟେ କୋଡିଏ ଦିନ ତାଙ୍କର ନାନାବ୍ରତ ଉପାସରେ କଟିଯାଏ ଆକାଶକୁ ଏକଧ୍ୟାନରେ ଚାହିଁ ଚାହିଁ ଅନିଦ୍ରା ହେବେ ବୋଲି ରାତିରେ କିଛି ଖାଆନ୍ତି ନାହିଁ । ଏହି ସମସ୍ତର ଫଳରେ ତାଙ୍କର ଦେହ ଟିକିଏ ଟିକିଏ ବଡ ଶୀର୍ଣ୍ଣ, କ୍ଷୀଣ ଆଉ ଦୁର୍ବଳ ହୋଇଗଲା । ତଥାପି ଚନ୍ଦ୍ରଶେଖର ପୂର୍ବପରି ଶାସ୍ତ୍ର ମାନି ସେହି ନୀତିରେ ଚଳିଲେ । ମାଛ ମାଂସ ତ ସହଜେ ଛୁଇଁ ଯାନ୍ତି ନାହିଁ—ତା ଉପରେ ପୁଣି ଏ ଦୁର୍ବଳ ଦେହରେ ସେହି ବାର ବ୍ରତ ମନାସରେ ଅଧିକାଂଶ ଦିନ ଉପାସ ! ଏଥିରେ ଦେହର ଅବସ୍ଥା ଆହୁରି ଖରାପ ନ ହୋଇ କୁଆଡେ ଯିବ ?

ପଛେ ପଛେ ଆସିଲା ନାନା ବେମାରି – ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଶେଷରେ ଦାରୁଣ ଶୂଳ ରୋଗ । ଏହି ଭୀଷଣ ଶୂଳହିଁ ତାଙ୍କୁ ଏକାବେଳେ ମାଟି କରିଦେଲା—ସବୁ ସୁଖ ସବୁ ଶାନ୍ତି କୁଆଡ଼େ ମୁହୂର୍ତ୍ତକ ମଧ୍ୟରେ କାଢିନେଲା ! ଥିବ ଥିବ କାହିଁ ଆସି ହଠାତ୍ ମାରିବ ଯେ ପେଟକୁ ମଲଗଲି ହୋଇ ପଡିଯିବେ— କାହାରି ସାଙ୍ଗରେ ଯଦି କିଛି କଥାବାର୍ତ୍ତା ହେଉଥିବେ ବାଧ୍ୟ-ହୋଇ ସବୁ ବନ୍ଦକରି ଦେଇ ବଡ଼ ବିକଳ ହୋଇ ତଳେ ଗଡି-ଯିବେ ! ପେଟକୁ ଦୁଇ ହାତରେ ଚିପି ଧରି ପେଟମରା ଯନ୍ତ୍ରଣା ବନ୍ଦ ହେବା ପର୍ଯ୍ୟନ୍ତ ସେହିପରି ପଡ଼ିଥିବେ ।

ଏହି କଷ୍ଟଯୋଗୁଁ ସେ ଦୁଇଓଳି ସୁଦ୍ଧା ମୁଠାଏ ମୁଠାଏ କିଛି ଖାଇ ପାରିଲେ ନାହିଁ । ତଥାପି ଏତେ କଷ୍ଟ, ଏତେ ଯାତନା ଭୋଗିଲେ ସୁଦ୍ଧା ଆକାଶ ଦେଖିବାର ଲୋଭ କ୍ଷଣକପାଇଁ ହେଲେ ଛାଡ଼ିପାରିଲେ ନାହିଁ କିମ୍ବା ସେହି ରୋଗପାଇଁ କୌଣସି ଔଷଧର ଆଶ୍ରୟ ନେଲେ ନାହିଁ । ଯଦି କେହି କିଛି ଔଷଧ

ବ୍ୟବହାର କରିବାକୁ କେବେ କହେ, ତେବେ ସେ ଉତ୍ତର କରନ୍ତି—'ମତେ ଏପରି ଔଷଧ କିଏ ଦେବ ଯହିଁରେ ମୋର ପ୍ରତିଦିନର ଯାହା କାର୍ଯ୍ୟ,ସେଥିରେ କୌଣସି ବାଧା ପଡିବ ନାହିଁ—ପୂର୍ବପରି ମୁଁ ମୋର ଆକାଶ ଦେଖା କାମରେ ଲାଗିଥିବି। ଆଉ ମୁଁ ଯେଉଁ ଜିନିଷ ଖାଏ ନାହିଁ, ଯେଉଁ ଖାଦ୍ୟ ଖାଇବା ପାଇଁ ଶାସ୍ତ୍ରରେ ମନା ଅଛି। ସେଭଳି ପଥ୍ୟ ମତେ। ଖାଇବାକୁ ପଡିବ ନାହିଁ ?

ତାଙ୍କ ମନ ମୁତାବକ ଏଭଳି ଔଷଧ କିଏ କାହୁଁ ବା ତାଙ୍କୁ ଆଣି ଦେବ ? ବସ୍ତୁତଃ ଗୋଟିଏ କାର୍ଯ୍ୟରେ ମନ ପ୍ରାଣ ଏକାବେଳେ ଢାଳିଦେବାପାଇଁ ନିଜର ଜୀବନ ଓ ସ୍ୱାସ୍ଥ୍ୟରେ ଜଳାଞ୍ଜଳି ଦେଇଦେବ—ଏପରି ଲୋକ ଜଗତରେ ଆଉ କେତେ ଜଣ ଅଛନ୍ତି ?

## ଯୋଗେଶଚନ୍ଦ୍ରଙ୍କ ସହ ପରିଚୟ

ଗୁଣଙ୍କୁ ଉଚ୍ଛଳେ ଜଣେ କେହି ନାହିଁ,
ଗୁଣୀନ୍ଦ୍ର, ଭ୍ରମର ହେବ ଗୁଣଗ୍ରାହୀ !

ନାନା ଦୁଃଖ କଷ୍ଟ ମଧ୍ୟ ଦେଇ ଚନ୍ଦ୍ରଶେଖରଙ୍କ ଜୀବନ ବହି ଯିବାକୁ ଲାଗିଲା। ଶୂଳରୋଗ ତାଙ୍କ ଜୀବନର କାଳ ହୋଇ ବରାବର ରହିଲା। ଗୁହୁଁ ଗୁହୁଁ ବର୍ଷେ, ଦୁଇବର୍ଷ, ପାଞ୍ଚବର୍ଷ, ଦଶବର୍ଷ ହୋଇ ହୋଇ ତିରିଶବର୍ଷ ପୁଣି ହୋଇ ଯିବାକୁ ବସିଲା, ବର୍ତ୍ତମାନ ତାଙ୍କର ବୟସ ପ୍ରାୟ ଅସି ଷାଠିଏ।

'ସିଦ୍ଧାନ୍ତ ଦର୍ପଣ' ପରି ଜଗତର ସର୍ବଶ୍ରେଷ୍ଠ ବୈଜ୍ଞାନିକ ଗ୍ରନ୍ଥ ଲେଖି ସୁଦ୍ଧା ଦିନେ ହେଲେ ସେ ସେ ବିଷୟରେ କାହାରିକୁ

କରୁ ନାହାନ୍ତି । ନିଜର ଏତେ ଏତେ ଆକାଶରେ ଅବସ୍ଥାର କଥା କାହାରିକି ଦେଖେଇ ହୋଇ ନାହାନ୍ତି କିମ୍ବା ନିଜର ପ୍ରଶଂସା କାହାରିଠାରୁ ଶୁଣିବାକୁ ଦିନେ ହେଲେ ଚେଷ୍ଟା କରି ନାହାନ୍ତି । ତାଙ୍କର ନାମ, ପ୍ରଶଂସା, ଖ୍ୟାତି, ପୌରୁଷ ଏ ସବୁରେ କି ଲୋଡ଼ା ? ଏ ସବୁ ଅତୈଇଦନିଆ କଥାରେ ତାଙ୍କ ମନ କାହିଁକି ଭୁଲିବ ?

ଏହିରୂପେ ନିଜ ଜୀବନର ଷାଠିଏ ବର୍ଷ କାଳ ଅତି ସାଧାରଣ ଭାବରେ ଦୀନହୀନ ପରି କଟାଇ କେବଳ ସେହି ଅନନ୍ତ ସୃଷ୍ଟି ରହସ୍ୟଭେଦ କରିବାରେ ଆପଣାକୁ ଲଗାଇ ଥାନ୍ତି । କୌଣସି କାରଣରୁ ୧୮୯୫ ଖ୍ରୀଷ୍ଟାବ୍ଦରେ ସେ ଥରେ କଟକ ଆସିଲେ । ସେତେବେଳେ ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ ଏମ୍.ଏ. କଟକ କଲେଜରେ ବିଜ୍ଞାନ ପ୍ରଫେସର୍ ଥାନ୍ତି । ଯୋଗେଶବାବୁଙ୍କ ପରି ପଣ୍ଡିତ, ବୈଜ୍ଞାନିକ ଆମ ଦେଶରେ ଖୁବ୍ କମ୍ କହିଲେ ଚଳେ । ତାଙ୍କର ବସା ପାଖରେ ଚନ୍ଦ୍ରଶେଖର ବସା କରି ରହିଲେ ।

**ଯୋ**ଗେଶବାବୁ ପ୍ରାୟ ଅଧିକାଂଶ ଦିନ ରାତିରେ କିଛି ସମୟ ଆକାଶରେ ଗ୍ରହନକ୍ଷତ୍ରଙ୍କ ଗତି ବିଧି ଦେଖନ୍ତି । ସେ ଦେଖିଲେ, ତାଙ୍କ ବସା ପାଖରେ ଜଣେ କିଏ ପ୍ରତିଦିନ ରାତିରେ ଜାଗି କେତେଖଣ୍ଡ କାଠି ଧରି ସେଥିରେ ଆକାଶକୁ କଣ ଦେଖୁଛି । ତାଙ୍କ ମନରେ ବଡ଼ କୌତୂହଳ ଓ ଆଗ୍ରହ ହେଲା । ସେ ତହୁଁ ତା'ଆରଦିନ ତାଙ୍କୁ ନିଜବସାକୁ ଡ଼ାକି ଆଣି ବୁଝିଲେ ଯେ, ତାଙ୍କନାମ ଚନ୍ଦ୍ରଶେଖର ସିଂହ ସାମନ୍ତ । ସେ ଖଣ୍ଡପଡ଼ା ରାଜ-ବଂଶର ଲୋକ —ସବୁବେଳେ ଜ୍ୟୋତିଷ ଚର୍ଚ୍ଚା କରି କରି ଦିନ

ଯାଉଥିଲେ । କେତେଖଣ୍ଡ କାଠିରେ ତିଆରି ତାଙ୍କ ସ୍ୱୟଂବଦ୍ଧ ଓ ମାନ-ଯନ୍ତ୍ର ଦେଖି ଯୋଗେଶବାବୁ ଅବାକ୍ ହୋଇଗଲେ । ଯୋଗେଶ ବାବୁ ବିଜ୍ଞାନ ବିଷୟରେ ବଡ଼ ପଣ୍ଡିତ । ସେ ଚନ୍ଦ୍ରଶେଖରଙ୍କୁ ଜ୍ୟୋତିଷଶାସ୍ତ୍ର ଓ ଆକାଶତତ୍ତ୍ୱ ପ୍ରଭୃତି ବିଷୟ ନେଇ ଅନେକ କଥା ପଚାରିଲେ । ତାର ଉତ୍ତରରେ ସାଙ୍ଗେ ସାଙ୍ଗେ ସେ ଯାହା ଶୁଣିଲେ, ତାହାଦ୍ୱାରା ତାଙ୍କ ହୃଦୟ ଆଶ୍ଚର୍ଯ୍ୟରେ ପୂର୍ଣ୍ଣ ହୋଇଗଲା । ଓଃ ! କି ମହାପଣ୍ଡିତ, କି ମହାଜ୍ଞାନୀ, କି ମହା-ବୈଜ୍ଞାନିକ, ମହାଜ୍ୟୋତିଷୀ ଚନ୍ଦ୍ରଶେଖର ! ତାଙ୍କଠାରୁ ଯେ ଅସଂଖ୍ୟ ବିଷୟ ଶିଖିବାକୁ ଅଛି ! ଯୋଗେଶବାବୁ ତାଙ୍କ ଅଗାଧ ଅସୀମ ଜ୍ୟୋତିଷ ଜ୍ଞାନର ପରିଚୟ ପାଇ ମୁଗ୍ଧ ହୋଇଗଲେ ।

**ନା**ନା କଥାବାର୍ତ୍ତା ପରେ ଯୋଗେଶଚନ୍ଦ୍ର, ଜ୍ୟୋତିଷ ଚର୍ଚ୍ଚା ଦ୍ୱାରା ସେ କି ବିଶେଷ ଫଳ ପାଇଛନ୍ତି ବୋଲି ପଚାରିବାରୁ ଚନ୍ଦ୍ରଶେଖର ଅତି ବିନୀତଭାବରେ ନିଜ 'ସିଦ୍ଧାନ୍ତଦର୍ପଣ' କଥା କହି ତାହାହିଁ ତାଙ୍କ ଜୀବନବ୍ୟାପୀ ଜ୍ୟୋତିଷ ଚର୍ଚ୍ଚାର ଫଳ ବୋଲି ପ୍ରକାଶ କଲେ । ତା ପରେ ଯୋଗେଶଚନ୍ଦ୍ର ମହା ଆଗ୍ରହରେ 'ସିଦ୍ଧାନ୍ତ ଦର୍ପଣ' ପଢ଼ି ଆଲୋଚନା କରିବାକୁ ଲାଗିଲେ ।

**ସେହି**ଦିନଠୁଁ ଯୋଗେଶଚନ୍ଦ୍ର ଚନ୍ଦ୍ରଶେଖରଙ୍କୁ ଗୁରୁରୂପରେ ମାନିଲେ ଏବଂ ତାଙ୍କର ଗୁଣ, ପ୍ରତିଭା ଓ ଜ୍ଞାନ କଥା ଚାରିଆଡ଼େ ପ୍ରଚାର କରିବାକୁ ପ୍ରତିଜ୍ଞା କଲେ । ଏଡ଼େ ବଡ଼ ବୈଜ୍ଞାନିକ ଜଣେ, ଯାହାଙ୍କୁ ଅନ୍ୟ କୌଣସି ସଭ୍ୟଦେଶ ପାଇଥିଲେ ଚିରଦିନ ଗର୍ବରେ ଛାତି ଫୁଲାଇଥାନ୍ତା, ସେ ଏହିପରି ଅନ୍ଧାର କୁଳିଜରେ ପଡ଼ି ରହିବେ ! ବଣର ମାଳତୀପରି ବଣରେ ଫୁଟି ଝଡ଼ିବେ !

ବାସ୍ତବକ୍ ଯୋଗେଶଚନ୍ଦ୍ରଙ୍କ ସହିତ ଯେବେ ଦୈବଯୋଗକୁ ଦେଖା ପରିଚୟ ନ ହୋଇଥାନ୍ତା, ତାହାହେଲେ ଚନ୍ଦ୍ରଶେଖରଙ୍କ ପରି ସମୁଜ୍ଜ୍ୱଳ ମଣି ସେହି ଗଡଜାତର ଅନ୍ଧାର ଖଣି ଭିତରେ ପଡ଼ି ପଡ଼ି ଶେଷରେ ନିଶ୍ଚୟ ନଷ୍ଟହୋଇ ଯାଇଥାନ୍ତା ! ଏଥିପାଇଁ ଯୋଗେଶଚନ୍ଦ୍ରଙ୍କ ପାଖରେ ଓଡ଼ିଶା ବା ଭାରତ କାହିଁକି, ସାରି ଜଗତ କୃତଜ୍ଞ—ଋଣୀ !

ଏହିରୂପେ ଯୋଗେଶଚନ୍ଦ୍ରଙ୍କ ସହିତ ଚନ୍ଦ୍ରଶେଖରଙ୍କର ଘନିଷ୍ଠ ପରିଚୟ ଓ ତା ସଙ୍ଗେ ସଙ୍ଗେ ଘନିଷ୍ଠ ସମ୍ବନ୍ଧ ମଧ୍ୟ ହୋଇଗଲା । ଏଣିକି ସେ ଅନେକଥର କଟକ ଆସିବାକୁ ଲାଗିଲେ । ପ୍ରତିଥର ଜ୍ୟୋତିଷ ବିଜ୍ଞାନ ସମ୍ବନ୍ଧରେ କେତେ ଆଲୋଚନା, ପରୀକ୍ଷା ମଧ୍ୟ ହେବାକୁ ଲାଗିଲା ।

କ୍ରମେ ଚନ୍ଦ୍ରଶେଖରଙ୍କ ନାମ ଗୁରୁଆଡେ ସଭ୍ୟ ଶିକ୍ଷିତ ଲୋକେ ଜାଣିଲେ । ଯୋଗେଶଚନ୍ଦ୍ରଙ୍କର କେତେ ଜଣ ବନ୍ଧୁଙ୍କୁ ତାଙ୍କ କଥା ବଡ ଅପସନ୍ଦ ଲାଗିଲା—ସତେ ଓଡ଼ିଶାରେ ପୁଣି ଏମିତି ଜଣେ କିଏ ଅଛି—ଆଜିଯାକେ ଭଲ କୁଆଡ଼େ ଥିଲା ! ବାଡି ଗୁରିଖଣ୍ଡ ଆଖିରେ ଲଗାଇ ଆକାଶକଥା ସବୁ କହିଦେବ !! ଏହିରୂପେ ସେମାନେ ସନ୍ଦେହରେ ପଡି ତାଙ୍କୁ ବଡିବା ପାଇଁ ମନ ବଳାଇଲେ ।

ଦିନେ ସନ୍ଧ୍ୟାବେଳେ ମଙ୍ଗଳ ଓ ବୁଧ ଗ୍ରହ ପରସ୍ପର ଠାରୁ ଖୁବ୍ ଅଳ୍ପ ତଫାତ୍‌ରେ ଥିଲେ । ସେମାନେ ଚନ୍ଦ୍ରଶେଖରଙ୍କୁ ପଚାରିଲେ, ଅଚ୍ଛା, କହନ୍ତୁ ତ ଦେଖି ବର୍ତ୍ତମାନ ବୁଧ ଓ ମଙ୍ଗଳ କେତେ ଛଡାରେ ଅଛନ୍ତି ? ଏହା ଶୁଣି ଚନ୍ଦ୍ରଶେଖର ସାଙ୍ଗେ ସାଙ୍ଗେ ଅପଣାର ମାନଯନ୍ତ୍ର ଖଣ୍ଡି

କାଟିଲେ ଏବଂ ତାର ସାହାଯ୍ୟରେ କଣ ଠିକେ ମାପି ଗୃହକୁ ଗୃହକୁ ଉତ୍ତର କଲେ—"ଛ ଡ଼ିଗ୍ରୀ ମାନ ତଫାତରେ ଅଛନ୍ତି ।" ଏଣେ ଯୋଗେଶବାବୁ ପ୍ରଭୃତି ଦୂରବୀକ୍ଷଣଯନ୍ତ୍ର ଦ୍ୱାରା ଦେଖିଲେ ଯେ ଠିକ୍ ସେହି ଛ ଡିଗ୍ରୀ ତଫାତ୍ । ଏବେ ଚନ୍ଦ୍ରଶେଖରଙ୍କ ସେ କାଠି କେତେଖଣ୍ଡର ଗୁଣ ସେମାନେ ଜାଣି ପାରିଲେ ।

ଚନ୍ଦ୍ରଶେଖର ଆଜଯାକେ 'ଦୂରବୀକ୍ଷଣ ଯନ୍ତ୍ର' କପର ଦେଖି ନ ଥିଲେ, ଏବେ ତାହାକୁ ଆଖିରେ ଦେଖି ଏଡ଼େ ଆନନ୍ଦିତ ହୋଇଗଲେ ଯେ, କଥାରେ କହି ହେବ ନାହିଁ । ସେଠାରେ ସେ କେତେକ୍ଷଣ ପର୍ଯ୍ୟନ୍ତ ସେହି ଯନ୍ତ୍ରଟିକୁ ଦେଖି ସବୁକଥା ଆପେ ଆପେ ଠଉର କରି ନେଲେ ଏବଂ ଶେଷରେ ଦୁଃଖ କରି କହିଲେ—"ମୁଁ ଯେବେ ଏଭଳି ଗୋଟିଏ ସୁନ୍ଦର ଯନ୍ତ୍ରର ସାହାଯ୍ୟ ପାଇଥାନ୍ତି, ତା ହେଲେ ମତେ ଏତେ କଷ୍ଟ, ଏତେ ଅସୁବିଧା ଭୋଗିବାକୁ ଆଦୌ ପଡ଼ି ନ ଥାନ୍ତା ।"

## ଦରବାରରେ ଉପାଧିଲାଭ

ଜାଣେ ମୁଁ, ନ ଥିଲି ସମ୍ମାନ ଅଭିଳାଷୀ
ସମ୍ମାନ ଭୂମିକୁ ଲୋଭ ନେଲା ଯାଇ ।

ଯୋଗେଶ ଚନ୍ଦ୍ରଙ୍କ ଯୋଗୁଁ କି ଓଡ଼ିଶାବାସୀ କି ଓଡ଼ିଶା ବାହାର ଅନ୍ୟ ଦେଶବାସୀ ସମସ୍ତେ ଗୃହକୁ ଗୃହକୁ ଚନ୍ଦ୍ରଶେଖରଙ୍କ ଅସୀମଜ୍ଞାନର ପରିଚୟ ପାଇଗଲେ । ଗୁଣ ଥିଲେ ଏହିପରି ଗୁଣଆଦର ବଢ଼ିଣି ଉଠେ ସିନା !

ସେ ସମୟରେ କୁକ୍‌ସାହେବ ଓଡ଼ିଶାର କମିଶନର ଥାନ୍ତି । ତାଙ୍କର ଉଦ୍‌ଯୋଗରେ ବୀରବିକ୍ରମ ପିଣ୍ଡରେ ଗଢ଼ା

ଇତିହାସ-ପ୍ରସିଦ୍ଧ କଟକର ବାରବାଟୀ ମଧ୍ୟରେ ୧୮୯୭ ଖ୍ରୀଷ୍ଟାବ୍ଦରେ ଗୋଟିଏ ଦରବାର ହେଲା । କେତେ ରାଜା ମହାରାଜା ଗୁଣୀ ପଣ୍ଡିତ ଏଥିକି ନିମନ୍ତ୍ରିତ ହୋଇ ଆସିଲେ । ଓଡ଼ିଶାର ଯୋଗ୍ୟଲୋକମାନଙ୍କୁ ଉପାଧି ଦେଇ ସେମାନଙ୍କର ସମ୍ମାନ ବଢ଼ାଇବାହିଁ ଏ ଦରବାରର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ଚନ୍ଦ୍ରଶେଖରଙ୍କ ପାଖକୁ ମଧ୍ୟ ନିମନ୍ତ୍ରଣ ପତ୍ର ପଠାଗଲା । ସେ ତାହା ଯଥାସମୟରେ ପାଇ ଦରବାରକୁ ଆସିବା ପାଇଁ ଠିକ୍ କଲେ । ଗୋଟାଏ ବଡ଼ ଉପାଧି ପାଇବା ପାଇଁ ଯେ ସେ ଆସିବାକୁ ମନ ବଳାଇଲେ, ତାହା କଦାପି ନୁହେଁ । ତାଙ୍କର ଯୋଗ୍ୟତା ଅନୁସାରେ ଉପାଧି ଦେବାକୁ ଜଗତରେ ବା କିଏ ଅଛି ! ସେ କେବଳ ଆସିଲେ—ଏଡ଼େ ବଡ଼ ଗୋଟାଏ ଦରବାର ଦେଖିବାକୁ—ଯାହା ସେ ଜୀବନରେ କେଉଁଠି କେବେ ଦେଖି ନାହାନ୍ତି କି ଦେଖିବାର ମଧ୍ୟ ଆଶା ନାହିଁ ।

ରାଜା ନଟବର ତ ତାଙ୍କର ପରମ ଶତ୍ରୁ । ସେ ଯେପରି ଜାଣିଲେ ଚନ୍ଦ୍ରଶେଖରଙ୍କୁ ଉପାଧି ମିଳିବା ପାଇଁ ସରକାରଠାରୁ ଡକରା ଆସିଲାଣି, ତାଙ୍କ ହୃଦୟ ହିଂସାରେ ଅଧୀର ହୋଇଗଲା । "କଟକ ଗଲେ ସିନା ଉପାଧି ମିଳିବ, ଯେବେ ଚନ୍ଦ୍ରଶେଖରଙ୍କୁ ମୋଟେ ଯିବାକୁ ନଦେବି ତେବେ ?"—ଏହା ଭାବି ସେ ନାନା ଅସୁବିଧା ନାନା ବାଧାବିଘ୍ନ ଆଣି ପହଞ୍ଚାଇଲେ । ସେ ସବୁ ଏଡ଼ି ଯଥାସମୟରେ ଦରବାରରେ ପହଞ୍ଚିବା ଚନ୍ଦ୍ରଶେଖରଙ୍କ ପକ୍ଷରେ ଏକାବେଳକେ ଅସମ୍ଭବ ହୋଇ ପଡ଼ିଲା; ତେଣୁ ସେ କମିଶନରଙ୍କ ପାଖକୁ ତାର କରି ଏସବୁ ଜଣାଇଲେ । ସଙ୍ଗେ ସଙ୍ଗେ ଏଣୁ ରାଜାଙ୍କ ପାଖକୁ ତାର ଗଲା—"ସମସ୍ତ ସୁବିଧା କରି ଦେଇ

ଚନ୍ଦ୍ରଶେଖରଙ୍କୁ ଦରବାରପୂର୍ବରୁ ଆଣି ଏଠାରେ ପହଞ୍ଚାଇଦଅ।" ଆଉ ରାଜା ଯାଆନ୍ତି କୁଆଡେ ? ମନ୍ତ୍ରୀମାନ ମନରେ ମାର ନିଜେ ପୁଣି ସବୁ ଯୋଗାଡ କରିଦେଲେ । ଚନ୍ଦ୍ରଶେଖର ବଡ ସୁବିଧାରେ ଆସି ଦରବାରରେ ଯୋଗ ଦେଲେ ।

ରାଜା ନଟବରଙ୍କର ଏହି କୁକାର୍ଯ୍ୟ ଓ ହିଂସା ଦେଖି ସରକାର ତାଙ୍କର ବହୁତ କ୍ଷତି କରିବାକୁ ବସିଥିଲେ;କିନ୍ତୁ ଚନ୍ଦ୍ର-ଶେଖର ତାହା ଶୁଣିଲାମାତ୍ରେ ବଡ ବିନୀତଭାବରେ କହିଲେ— "ଯଦି ମୋର ପାଇଁ ମୋ ପୁତୁରା ଏତେ ବିପଦରେ ପଡେ,ତାହା-ହେଲେ ମୋର ସେ ଉପାଧି ଆଦୌ ଲୋଡା ନାହିଁ । ଆପଣ-ମାନେ କ୍ଷମା ଦେଉନ୍ତୁ—ମୁଁ ମୋ ଘରକୁ ଫେରି ଯାଉଛି ।" ଓଃ ! କି କୋମଳ ହୃଦୟ ! କି ପବିତ୍ର ଆତ୍ମା ! ଶତ୍ରୁ ପ୍ରତି ପୁଣି କି ଦୟା ! କି ମଧୁର ବ୍ୟବହାର ! ଚନ୍ଦ୍ରଶେଖରଙ୍କ ମୁହଁରୁ ଏ କଥାଗୁଡ଼ିକ ଶୁଣି ସମସ୍ତେ ମୁଗ୍ଧ ହୋଇଗଲେ । ନଟବରଙ୍କର ଆଉ କୌଣସି କ୍ଷତି ଘଟିଲା ନାହିଁ ।

ନିର୍ଦ୍ଦିଷ୍ଟ ଦିବସରେ ବଡ ସମାରୋହରେ ଦରବାର ସଭା ଆରମ୍ଭ ହେଲା । ଚନ୍ଦ୍ରଶେଖରଙ୍କୁ ସେଥିରେ ଅତି ଉଚ୍ଚ ସମ୍ମାନର ଚିହ୍ନ 'ମହାମହୋପାଧ୍ୟାୟ' ଉପାଧି ଦିଆଗଲା । ସଂସ୍କୃତ ଭାଷା ଓ ସାହିତ୍ୟରେ ସେପରି ଅଗାଧ ଜ୍ଞାନ ଓ ପାଣ୍ଡିତ୍ୟ ନ ଥିଲେ ଏହି ଉପାଧି କେହି ପାଆନ୍ତି ନାହିଁ । ଏ ପର୍ଯ୍ୟନ୍ତ ଯେତେଜଣ ଭାରତରେ ମହାମହୋପାଧ୍ୟାୟ ଉପାଧି ପାଇଥିଲେ, ସେ ସମସ୍ତେ ବ୍ରାହ୍ମଣ, କରଣ । ବ୍ରାହ୍ମଣମାନଙ୍କରହିଁ ସଂସ୍କୃତରେ ପାଣ୍ଡିତ୍ୟ ସମସ୍ତଙ୍କଠାରୁ ବେଶୀ, କିନ୍ତୁ ଚନ୍ଦ୍ରଶେଖର କ୍ଷତ୍ରିୟ ହୋଇ ସୁଦ୍ଧା ଏବେ ବ୍ରାହ୍ମଣମାନଙ୍କୁ ବଳିଗଲେ । ଓଡିଶାରେ ମହାମହୋପାଧ୍ୟାୟ,

ଉପାଧି ସର୍ବ ପ୍ରଥମେହିଁ ସେ ପାଇଲେ ଏବଂ ବ୍ରାହ୍ମଣ ନ ହୋଇ ଏ ଉପାଧି ପାଇବା ସମଗ୍ର ଭାରତରେ ତାଙ୍କଠାରେହିଁ ସର୍ବ ପ୍ରଥମେ ଦେଖାଗଲା । ଏଥିପାଇଁ ଓଡ଼ିଶା କମ୍ ଭାଗ୍ୟବାନ୍ ନୁହେଁ ।

ଏବେ ଚନ୍ଦ୍ରଶେଖରଙ୍କ ପୂରା ନାମ ହେଲା 'ମହାମହୋପାଧ୍ୟାୟ ସାମନ୍ତ ଶ୍ରୀ ଚନ୍ଦ୍ରଶେଖରସିଂହ ହରିଚନ୍ଦନ ମହାପାତ୍ର ।' ସିଂହ ସାମନ୍ତ ତାଙ୍କ ରାଜବଂଶର ଉପାଧି । ହରିଚନ୍ଦନ ମହାପାତ୍ର ଉପାଧି ପୁରୀର ଗଜପତି ମହାରାଜାଙ୍କଠାରୁ ସେ ପାଇଥିଲେ ।

ଦରବାରର କାର୍ଯ୍ୟ ଶେଷ ହେଲା । ନାନା ଅଞ୍ଚଳରୁ ନାନା ଦେଶରୁ ଆସିଥିବା ବିଖ୍ୟାତ ଲୋକ ଓ ରାଜା ମହାରାଜାମାନେ ଚନ୍ଦ୍ରଶେଖରଙ୍କ ଗୁଣ ଓ ଜ୍ୟୋତିଷ ଜ୍ଞାନର ପରିଚୟ ପାଇ ଓ ସାକ୍ଷାତ୍ ତାଙ୍କ ଦର୍ଶନ ପାଇ ନିଜନିଜକୁ ଗୌରବାନ୍ୱିତ ମନେ କଲେ । ତାର କେତେ ଦିନ ପରେ ଗୋଟିଏ ସୂର୍ଯ୍ୟଗ୍ରହଣ ଘଟିବ ବୋଲି ସେ ଆଗରୁ ଗଣନା କରି ଜାଣିଥିଲେ । ସେଥିପାଇଁ ଦରବାରରୁ ବିଦାୟ ନେଇ ସେ ସାଙ୍ଗେ ସାଙ୍ଗେ ଖଣ୍ଡପଡ଼ା ଫେରିବାକୁ ଯୋଗାଡ଼ କଲେ । ତାଙ୍କୁ କଟକରେ ଆଉ କେତେଟା ଦିନ ମାତ୍ର ଅଟକାଇ ଜ୍ୟୋତିଷ ବିଜ୍ଞାନର ମହାମହା ଆଶ୍ଚର୍ଯ୍ୟ କଥା ତାଙ୍କଠାରୁ ଶୁଣିବେ ବୋଲି କେତେ ଲୋକ କେତେ ଚେଷ୍ଟା କଲେ; ମାତ୍ର ସୂର୍ଯ୍ୟ ଗ୍ରହଣର ମହାସୁଖ ଏ ସଭ୍ରମିତି, ଏ ଆଦର ସୋହାଗ ତାଙ୍କୁ କାହିଁ ଦେଇ ପାରିବ ? ସୂର୍ଯ୍ୟ ଗ୍ରହଣ ପରି ଏତେ ବଡ଼ ଗୋଟାଏ କାଣ୍ଡ ଘଟିଯିବ, ଅଥଚ ସେ ଜାଣୁ ଜାଣୁ ତାକୁ ଦେଖିବାର, ପରୀକ୍ଷା କରିବାର ସୁଯୋଗ ହାତରୁ ଛାଡ଼ିଦେଇ ବସିବେ —ଏହା କି କେତେବେଳେ ସମ୍ଭବ ?

ଶେଷରେ ଅତି ବିନୟରେ ହାତ ଯୋଡ଼ି ସେ ସମସ୍ତଙ୍କ-ଠାରୁ ବିଦାୟ ନେଇ କଟକ ଛାଡିଲେ ।

## ସିଦ୍ଧାନ୍ତ ଦର୍ପଣ ପ୍ରକାଶ

ତାରରୂପେ ଉଇଁ ଉତ୍କଳ ଗଗନେ
ଉହ୍ଲ ଅଜ୍ଞାନ— ମେଘ ଆବରଣେ ।
ଦୂରୁ ଦେଖି ତବ ଦିବ୍ୟ ଜ୍ୟୋତିଃରଶ୍ମି
ଚହ୍ନିଲେ ଭୂମଣ୍ଡଳ ଦୂର ଦେଶବାସୀ ।
ଉତ୍କଳ ଉଦଧି— ଅଚଳେ ଭାସ୍କର
ଚହ୍ନିଲ ଭାରତର ଦିଅଁାନ୍ତି 'ଭାସ୍କର' ।

କ୍ରମେ ଚନ୍ଦ୍ରଶେଖର ଅସି ବୁଢ଼ା ହୋଇଗଲେ; ତାଙ୍କର ବୟସ ୭୪ ବର୍ଷ ହେଲା; ଅଥଚ ଓଡିଶାରେ କେହି ତାଙ୍କ ଗୁଣର ଉପଯୁକ୍ତ ଆଦର କଲେ ନାହିଁ ! କିନ୍ତୁ ଯୋଗେଶଚନ୍ଦ୍ରଙ୍କ ପ୍ରାଣ ସବୁବେଳେ ବ୍ୟସ୍ତ ଥାଏ—କିପରି ଚନ୍ଦ୍ରଶେଖର ବଞ୍ଚିଥାଉଁ ଥାଉଁ ତାଙ୍କ 'ସିଦ୍ଧାନ୍ତ ଦର୍ପଣ' ଛପାହେବ ! ଏଥିପାଇଁ ସେ କେତେ ରାଜା, ମହାରାଜା, ଧନୀ, ଜମିଦାରଙ୍କୁ ଅନୁରୋଧ, ପ୍ରାର୍ଥନା କଲେ । ଶେଷରେ ତାଙ୍କର ଆଶା ପୂର୍ଣ୍ଣ ହେଲା । ଆଠମଲ୍ଲିକର ଗୁଣଗ୍ରାହୀ ମହାରାଜା ମହେନ୍ଦ୍ରଦେବ ମହୋଦୟ 'ସିଦ୍ଧାନ୍ତ ଦର୍ପଣ'ର ସମୁଦାୟ ଛପାଖର୍ଚ୍ଚ ନିଜେ ଦେବେ ବୋଲି ଅଙ୍ଗୀକାର କଲେ । ଏହାଛଡ଼ା ମୟୂରଭଞ୍ଜର ମହାରାଜା ମଧ୍ୟ ଏକଶତ ଟଙ୍କା ଏହି ଉଦ୍ଦେଶ୍ୟରେ ଦାନ କଲେ । ସେହି ଟଙ୍କା ଚନ୍ଦ୍ରଶେଖରଙ୍କୁ ଧର୍ମ-ଦାଆ ହେଲା ।

ଏହି 'ସିଦ୍ଧାନ୍ତ ଦର୍ପଣ' ଛପାରେ ସେ ସମୟର ସମଗ୍ର ଗଡ଼-ଜାତରେ ସରକାରଙ୍କ ତରଫ ପ୍ରତିନିଧି (P. A ) ସୁଦାମ ଚରଣ

ନାୟକ ଖୁବ୍ ସାହାଯ୍ୟ କଲେ । ପ୍ରକୃତରେ ତାଙ୍କ ସାହାଯ୍ୟ ନ ମିଳିଥିଲେ ଏତେ ସହଜରେ ଓ ଅଳ୍ପ ସମୟରେ ଏହି ମହାଗ୍ରନ୍ଥ ଲୋକ-ସାଧାରଣଙ୍କ ଆଖିରେ ପଡ଼ି ପାରି ନ ଥାନ୍ତା । ତାଙ୍କ ଛଡ଼ା ଜ୍ୟୋତିଷୀ ପଣ୍ଡିତ ଘନଶ୍ୟାମ ମିଶ୍ର ମଧ୍ୟ ପ୍ରୁଫ୍ ପ୍ରଭୃତି ସଂଶୋଧନ କରି ଯେପରି ଶୀଘ୍ର ଏହି ମହାଗ୍ରନ୍ଥ ପ୍ରକାଶିତ ହେବ, ତାର ଯଥେଷ୍ଟ ଯତ୍ନ ନେଲେ ।

ଯାହାହେଉ, ୧୮୯୯ ଖ୍ରୀଷ୍ଟାବ୍ଦରେ 'ସିଦ୍ଧାନ୍ତ ଦର୍ପଣ' ପୁସ୍ତକ ଆକାରରେ ଛାପା ହୋଇ ଗୃହଅନ୍ତେ ପ୍ରଚ୍ଛନ୍ଦିତ ହେଲା । ଏହି ମହାଗ୍ରନ୍ଥର ମୂଳରେ ଯୋଗେଶଚନ୍ଦ୍ର ୬୨ ପୃଷ୍ଠାର ଗୋଟିଏ ଇଂରାଜୀ ଭୂମିକା ଓ ୨ ପୃଷ୍ଠାର ଆଉ ଗୋଟିଏ ସଂସ୍କୃତ ଭୂମିକା ଲେଖି ମହାତ୍ମା ଚନ୍ଦ୍ରଶେଖରଙ୍କୁ ଜଗତର ପ୍ରତ୍ୟେକ ବୈଜ୍ଞାନିକ ଜାତକୁ ଚିହ୍ନାଇ ଦେଲେ ।

ଏହାଛଡ଼ା 'ସିଦ୍ଧାନ୍ତ ଦର୍ପଣ'ର ଆକାର ୬୫୦ ପୃଷ୍ଠା । ଏଥିରେ ମୋଟ ଶ୍ଳୋକ ସଂଖ୍ୟା ୨୫୦୦ । ଏହି ୨୫୦୦ ଶ୍ଳୋକ ମଧ୍ୟରୁ ୨୨୮୪ ଟି ଶ୍ଳୋକ ଚନ୍ଦ୍ରଶେଖରଙ୍କ ନିଜର ରଚନା ଏବଂ ଅବଶିଷ୍ଟ ୨୧୬ ଟି ଶ୍ଳୋକ ସେ ସୂର୍ଯ୍ୟ ସିଦ୍ଧାନ୍ତ ଓ ସିଦ୍ଧାନ୍ତ ଶିରୋମଣି ପ୍ରଭୃତି ପ୍ରାଚୀନ ଜ୍ୟୋତିଷ ଗ୍ରନ୍ଥମାନଙ୍କରୁ ଉଦ୍ଧାର କରିଅଛନ୍ତି । 'ସିଦ୍ଧାନ୍ତ ଦର୍ପଣ'ରେ ଅନେକ ନୂତନ ତତ୍ତ୍ୱ, ନୂତନ ତଥ୍ୟର ଅବତାରଣା ଲେଖା ଅଛି ।

ଆମ୍ଭେମାନେ ସମସ୍ତେ ଜାଣୁ ଯେ—ସୂର୍ଯ୍ୟ ସ୍ଥିର ଓ ପୃଥିବୀ ପ୍ରଭୃତି ଗ୍ରହ ତାହାର ଚତୁର୍ଦ୍ଦିଗରେ ବୁଲୁଅଛନ୍ତି । ମାତ୍ର ଚନ୍ଦ୍ରଶେଖରଙ୍କ ଧାରଣା ଓ ପ୍ରମାଣ ଠିକ୍ ଏହାର ଓଲଟା । ସେ ନାନା ଯୁକ୍ତି, ନାନା କାରଣ ଓ ନାନା ଉଦାହରଣ ଦେଇ ପ୍ରମାଣ

କର ଅଛନ୍ତି ଯେ—ସୂର୍ଯ୍ୟ ଗ୍ରହକଡ଼ରେ ପୃଥିବୀ ଛଡା ଅନ୍ୟ ସବୁ ଗ୍ରହ ବୁଲୁଅଛନ୍ତି; ପୁଣି ସୂର୍ଯ୍ୟ ସେ ସମସ୍ତ ଗ୍ରହଙ୍କୁ ନେଇ ନିଜେ ପୃଥିବୀର ଚାରି ପାଖରେ ବୁଲୁଅଛି ପୃଥିବୀ ସବୁବେଳେ ସ୍ଥିର ।

'ସିଦ୍ଧାନ୍ତ ଦର୍ପଣ' ଛପା ହେବାର ପରେ ଯୋଗେଶଚନ୍ଦ୍ର ବିଲାତ ପ୍ରଭୃତି ସଭ୍ୟ ଦେଶକୁ ଉକ୍ତ ପୁସ୍ତକ ପଠାଇ ଦେଲେ, ସେ ସବୁଠାରେ ତାର ଆଲୋଚନା ହେଲା । ସେଠା ବୈଜ୍ଞାନିକ-ମାନେ ସିଦ୍ଧାନ୍ତ ଦର୍ପଣରେ ଥିବା ନାନା ତଥ୍ୟର ବର୍ଣ୍ଣନା ପଢି ଚମତ୍କୃତ ହୋଇଗଲେ ଏବଂ ସେହିଦିନୁ ଚନ୍ଦ୍ରଶେଖରଙ୍କୁ ପୃଥିବୀର ସର୍ବଶ୍ରେଷ୍ଠ ଜ୍ୟୋତିଷୀ ଓ ବୈଜ୍ଞାନିକ ବୋଲି ନତ-ମସ୍ତକରେ ମାନିନେଲେ ।

ଚାରିଆଡ଼େ ପତ୍ରିକା ଓ ଖବରକାଗଜମାନଙ୍କରେ 'ସିଦ୍ଧାନ୍ତ-ଦର୍ପଣ'ର ପ୍ରଶଂସା ବାହାରିଲା; ବିଶେଷତଃ 'ନେଚର'(Nature) ନାମକ ବିଲାତର ବିଖ୍ୟାତ ଏକ ପତ୍ରିକାରେ ଏ ବିଷୟରେ ପ୍ରଶଂସାପୂର୍ଣ୍ଣ ଅନେକ କଥା ପ୍ରକାଶିତ ହୋଇଥିଲା ।



## ଗୃହ-ସଂସାର

ଲକ୍ଷ୍ମୀଙ୍କ ସପତ୍ନୀ ଦେଖିବାକୁ ବରଷା
ଦାରିଦ୍ର୍ୟ ତୁମ୍ଭର ସଙ୍ଗୀ ହେଲା ସଦା ।

ଚନ୍ଦ୍ରଶେଖରଙ୍କର ସଂସାର ସହିତ କୌଣସି ସମ୍ପର୍କ ନାହିଁ କହିଲେ ଚଳେ । ସେ ତାଙ୍କର ଗୃହ-ସଂସାର କଥା ଖୁବ୍ ଅଳ୍ପ ଜାଣନ୍ତି । ଜାଣିବାକୁ ବା ବେଳ କାହିଁ ? ଆକାଶ ଦେଖୁ ଦେଖୁ, ଗଣନା କରୁ କରୁ, ଜ୍ୟୋତିଷତତ୍ତ୍ୱ ଭାବୁ ଭାବୁ ତ ଦିନ ବିତି ଯାଉଛି ନାହିଁ, ଘରକଥା ବୁଝିବାକୁ ତର କାହିଁ ?

ସଂସାରେ ଥାଇ ସେ ସଦା ଉଦାସୀନ
ଉଦାସୀନ ପ୍ରାଣେ କଟାଇଲେ ଦିନ ।

ଏହାହିଁ ତାଙ୍କ ଗୃହ ସଂସାରର ବିଶେଷତ୍ୱ । ପ୍ରକୃତରେ ସେ ସଂସାରୀ, କିନ୍ତୁ ସଂସାର ତାଙ୍କୁ ଉଲେହେଲେ ବାନ୍ଧି ରଖିପାରି ନାହିଁ । ସଂସାରକଥା ସେ ଆଦୌ ଜାଣନ୍ତି ନାହିଁ—ବଡ଼ ସରଳ ବଡ ସାଦାସିଧା । ଗ୍ଲେଟ ଶିଶୁଟିଏ ପରି ତାଙ୍କର ବ୍ୟବହାର ଆଉ କଥାବାର୍ତ୍ତା ! ଯେ ଦେଖିଛୁ, ସେହି କେବଳ ଜାଣିଛୁ—ସେ କିପରି ମହତ୍ ଲୋକ !

ଚନ୍ଦ୍ରଶେଖରଙ୍କ ସ୍ତ୍ରୀ ଅତି ଗୁଣବତୀ ସତୀ, ବୁଦ୍ଧିମତୀ । ସବୁ କାର୍ଯ୍ୟରେ ତାଙ୍କର ବୁଦ୍ଧି ବଡ଼ ବିଚକ୍ଷଣ, ଘର ଚଳାଇବା ବିଷୟରେ ସେ ବଡ଼ ସାବଧାନ । ବାସ୍ତବିକ୍ ଚନ୍ଦ୍ରଶେଖର ଯେପରି ଲୋକ, ତାଙ୍କ ଭାଗ୍ୟରେ ଯଦି ଅନ୍ୟ ସ୍ତ୍ରୀ ପଡ଼ିଥାନ୍ତେ, ତାହାହେଲେ ବୋଧହୁଏ ତାଙ୍କର ଦୁଃଖର ସୀମା ରହି ନଥାନ୍ତା । ତାଙ୍କର ତିନି ପୁଅ—ବଡ଼ ପୀତାମ୍ବର ସିଂହ ସାମନ୍ତ, ମଝିଆଁ ଗଦାଧର ସିଂହ ସାମନ୍ତ, ଆଉ ସାନ ଚକ୍ରଧର ସିଂହ ସାମନ୍ତ । ତିନିପୁଅ ଯାକ ବେଶ୍ ଜ୍ଞାନୀ ଆଉ ଗୁଣୀ । ଏମାନଙ୍କ ମଧ୍ୟରୁ ପୀତାମ୍ବର ବଡ଼ ସାହିତ୍ୟିକ, ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ଜ୍ଞାନ । ସେ ଓଡ଼ିଆରେ 'କୃଷ୍ଣଲୀଳା-କଳ୍ପଲତା' ବୋଲି ଖଣ୍ଡିଏ ଅତି ମନୋହର କାବ୍ୟ ରଚନା କରିଅଛନ୍ତି, ତାହା ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ ! ଦୁଃଖର କଥା—ସେ ଆଜିକାଲି ଆଉ ସଂସାରରେ ନାହାନ୍ତି । ଗଦାଧର ବାପାଙ୍କଠାରୁ ଜ୍ୟୋତିଷବିଦ୍ୟା ଶିଖି ଉପଯୁକ୍ତ ଗୁଣଧର ପୁତ୍ର ହୋଇଅଛନ୍ତି । ବର୍ତ୍ତମାନ ସେ ବାପାଙ୍କ ଗଣନା ଅନୁସାରେ ସାମନ୍ତ ପାଞ୍ଜି ପ୍ରତି ବର୍ଷ ତିଆରି

କରି ଦେଶରେ ପ୍ରଚାର କରୁଅଛନ୍ତି । ଚନ୍ଦ୍ରଶେଖରଙ୍କ ସ୍ତ୍ରୀ ଆଜି ପର୍ଯ୍ୟନ୍ତ ଥିଲେ,ଅଳ୍ପକେତେ ବର୍ଷହେଲା ସଂସାର ଛାଡ଼ି ଯାଇଛନ୍ତି ।

ଯାହାହେଉ, ସ୍ତ୍ରୀ ପୁଅ ଏମାନଙ୍କୁ ନେଇ ଚନ୍ଦ୍ରଶେଖରଙ୍କ ଘରଟି ଗଢ଼ା ହୋଇଥିଲା । ଯେତେ ହେଲେ ସେ ରାଜବଂଶର, ତେଣୁ ତାଙ୍କର ସବୁ ବନ୍ଧୁ ରାଜା ରାଜୋଡ଼ାଙ୍କ ପରି । ରାଜବଂଶର ନିୟମ ଅନୁସାରେ ଅନେକ ପୋଇଲା ପରିବାସ୍ତ ଗୃହକର ବାକର ତାଙ୍କ ଘରେ ଥିଲେ । ସେମାନେ ତାଙ୍କର ଆଦୌ ଦରକାରରେ ନ ଆସିଲେ ସୁଦ୍ଧା, ବାଧ୍ୟ ହୋଇ ତାଙ୍କୁ ପୋଷିବାକୁ ପଡ଼ୁଥିଲା । ଏତେ ଖର୍ଚ୍ଚକୁ ଆୟ କାହିଁ ? ଖର୍ଚ୍ଚପାଇଁ ବର୍ଷକୁ ସେ ପାଞ୍ଚଶ'ଟି ଟଙ୍କା ରାଜ୍ୟରୁ ପାଉଥିଲେ, ଏହି ଛଡ଼ା ଖଞ୍ଜା ଗାଁମାନଙ୍କରୁ ଧାନ ପ୍ରଭୃତି କିଛି ମଧ୍ୟ ମିଳୁଥିଲା । ମାତ୍ର ଏତେ ଲୋକଙ୍କୁ ଏତିକ ଅଣ୍ଟିବ କାହୁଁ ? ଫଳରେ ତାଙ୍କୁ ବରାବର ଟଙ୍କା କରଜ କରିବାକୁ ପଡ଼ିଲା, ପ୍ରତିବର୍ଷ ଏହି କରଜ ବଢି ବଢି ଶେଷକୁ ଏତେ ବେଶୀ ହୋଇ ଗଲା ଯେ, ସେ ଏକାବେଳେ କରଜରେ ବୁଡ଼ିଗଲେ । ଚନ୍ଦ୍ରଶେଖରଙ୍କର ଏ ଶେଷ ଜୀବନରେ ସେହି କରଜହିଁ ଏକମାତ୍ର ଚିନ୍ତାର ବିଷୟ ହେଲା ।

ଏଣିକି ଆଉ ବେଶୀ ସମୟ, ସେ ଜ୍ୟୋତିଷ ଆଲୋଚନା କରି ପାରିଲେ ନାହିଁ । ସବୁବେଳେ କେବଳ କରଜ କରଜ ହୋଇ ଅଥୟ ହେଲେ । ରାତିରେ ଆକାଶକୁ ଚାହିଁ ବସିଛନ୍ତି, ହଠାତ୍ କରଜ କଥା ମନେ ପଡ଼ିଗଲା ତ,ଆକାଶ କଥା ସେତିକିରେ ରହିଲା । ଏହିରୂପେ କି ଦିନ କି ରାତି, ଚବିଶଘଣ୍ଟା ସେହି କରଜହିଁ ତାଙ୍କୁ ଖାଇଲା । ତେବେ ଏହି ସମୟରେ ତାଙ୍କୁ ଆଉ ଗୋଟିଏ ସୁବିଧା ଜୁଟିଲା । ସେ ଯେଉଁ ପାଞ୍ଜି ତିଆରି କଲେ, ତାକୁ ଜଣେ ପ୍ରକାଶକ ନେଇ ଛାପି ଦେଶରେ ପ୍ରଚାର କଲେ ।

ସେହି ପାଞ୍ଜି ଲେଖାରୁ କେତେବର୍ଷ ତିରିଶ ଟଙ୍କା କରି ତାଙ୍କୁ ମିଳିଲା । ଏହାଛଡ଼ା ସେସମୟର କମିଶନରଙ୍କ ଯତ୍ନରେ ସରକାରଙ୍କ ଠାରୁ ତାଙ୍କୁ ପ୍ରତିମାସରେ ପନ୍ଦର ଟଙ୍କା ଲେଖାଏଁ ସାହାଯ୍ୟ ମଧ୍ୟ ମିଳିଲା । ଏହିରୂପେ ତାଙ୍କ ଜୀବନର ଶେଷ କେତୋଟି ବର୍ଷ କଷ୍ଟେମଷ୍ଟେ ଚାଲି ଗଲା । ଆଉ ପ୍ରାୟ କରଜ କରିବାକୁ ପଡ଼ିଲା ନାହିଁ । ମାତ୍ର ଆଗ କରଜ ସେହିପରି ବଢୁଥାଏ ।

## ଶ୍ରୀକ୍ଷେତ୍ରରେ ମୁକ୍ତି

ଧନ୍ୟ ଧନ୍ୟ ଆଦେହ
ମର୍ତ୍ତ୍ୟଦେବେହ ତୁମ୍ଭେ
ତପସ୍ୱି-ସତ୍ତମ,
ପରଜାଲ ଯମ ।

ଦିନୁଁ ଦିନୁଁ ଚନ୍ଦ୍ରଶେଖରଙ୍କ ବୟସ ୭୯ ବର୍ଷ ହୋଇଗଲା । ଏଣିକି ସେହି ଶୂଳ ରୋଗ, ତା ସାଙ୍ଗେ ସାଙ୍ଗେ ପୁଣି ଏ ଜନ୍ମରୋଗ ଏକାଠି ମିଶି ତାଙ୍କ ପ୍ରାଣକୁ ହନ୍ତସନ୍ତ କରିବାକୁ ବସିଲେ । ଚନ୍ଦ୍ରଶେଖର ମଧ୍ୟ ଦେଖିଲେ—ତାଙ୍କ ଜୀବନ ଆସି ଶେଷହେବା ଉପରେ । ସେ କେବଳ ସବୁବେଳେ ସେହି ବଡ଼ ଦେଉଳର ବଡ଼ ସାଆନ୍ତ ପତିତପାବନ ଜଗନ୍ନାଥଙ୍କୁ ମନପୂରାଇ ଡାକିବାକୁ ଲାଗିଲେ ।

ଭାରତରେ ପୁରୀଧାମହିଁ ଏକମାତ୍ର ମୁକ୍ତିର ସ୍ଥାନ—ସେହି ଶ୍ରୀକ୍ଷେତ୍ରରେ ପିଣ୍ଡ ପଡ଼ିଲେ ମୁକ୍ତି ମିଳେ—ଏହା ହିନ୍ଦୁର ଦୃଢ଼ ସତ୍ୟ ବିଶ୍ୱାସ । ଚନ୍ଦ୍ରଶେଖରଙ୍କର କେବଳ ତାହାହିଁ ଶେଷ ବାସନା ରହିଲା । କିପରି ମହାପ୍ରଭୁଙ୍କ ବାହାତଳେ ରହି ତାଙ୍କୁ ଦେଖୁଁ ଦେଖୁଁ ଜୀବନ ଛାଡ଼ିବେ, ସେହି ଚିନ୍ତାହିଁ ଶେଷକୁ ସାର ହେଲା । ଏଥିପୂର୍ବରୁ ସେ 'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥର ଶେଷରେ ଏହି କାମନାଟି ପ୍ରକାଶ କରିଥିଲେ ।

ଆଉ ଏଣିକି ଘରେ ରହିବାକୁ ତାଙ୍କୁ ଭଲ ଲାଗିଲା ନାହିଁ, ବାରଂବାର ଶ୍ରୀକ୍ଷେତ୍ରକୁ ଯାଇ ମୁକ୍ତିଦାତା ସେହି ବଳୀୟାର ଭୁଜଙ୍କୁ ବିକଳ ହୋଇ ଡ଼ାକିବାକୁ ଲାଗିଲେ ।

ଆଉ ବେଶୀ ଦିନ ନୁହେଁ—ଚନ୍ଦ୍ରଶେଖରଙ୍କ ଜୀବନର ଶେଷ ମୁହୂର୍ତ୍ତିଟି ବଡ଼ ଚଞ୍ଚଳ ପାଖେଇଆସିଲା । ସେ ନିଜେ ଗଣନା କରି କେଉଁଦିନ ମରିବେ, ତାହା ଆଗରୁ ଠିକ କରିଥିଲେ । ଧନ୍ୟ ସେ ଶକ୍ତି ! ଧନ୍ୟ ସେ ଗଣନା ! ସ୍ୱୟଂ ଯମରାଜ ତାଙ୍କ ଠାରେ ହାର ମାନିଲେ ; ସେ ମୃତ୍ୟୁର ଦିନ ଠିକ୍ କରିବା ପୂର୍ବରୁ ଏ ନିଜ ମୃତ୍ୟୁ ଦିନ ଠିକ୍ କରିଦେଲେ ।

ଚନ୍ଦ୍ରଶେଖର ୧୯୦୪ ମସିହା ଅପ୍ରେଲ ମାସର ପ୍ରଥମ ସପ୍ତାହରେ ଶେଷଥର ପାଇଁ ଶ୍ରୀକ୍ଷେତ୍ର ଗଲେ । ଦେହ ନିତାନ୍ତ କ୍ଷୀଣ ଆଉ ଦୁର୍ବଳ ହେଲେ କଣ ହେବ, ମୁହଁ ଆଉ ଆଖିର ଦିବ୍ୟ ଜ୍ୟୋତି କେତେ ଉଜ୍ଜ୍ୱଳ ଦିଶିଲା । ମୃତ୍ୟୁ ଯେତେ ନିକଟ ହୋଇ ଆସିଲା, ତାଙ୍କ ପ୍ରାଣ ସେତେ ଆନନ୍ଦ ଆଉ ଭକ୍ତିରେ ନାଚି ଉଠିଲା ।

ମହାପ୍ରଭୁ ଭକ୍ତର ଗୁହାରି ଶୁଣିଲେ—ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କଲେ—ଶେଷରେ ଦିବସର ମଧ୍ୟାହ୍ନ ମୁହୂର୍ତ୍ତିରେ ଚନ୍ଦ୍ରଶେଖରଙ୍କର ଅମର ଆତ୍ମାକୁ ନିଜର ପରମ ପବିତ୍ର କୋଳକୁ ମହା ଆନନ୍ଦରେ ଟାଣିନେଲେ । ଏହିଠାରେହିଁ ମହାସାଧକ ମହାଭକ୍ତ ମହାପୁରୁଷ ଚନ୍ଦ୍ରଶେଖରଙ୍କ ଆତ୍ମାର ମୁକ୍ତି—ସ୍ୱୟଂ ପରମେଶ୍ୱରଙ୍କ ଚିର ଶାନ୍ତିପୂର୍ଣ୍ଣ ଅଭୟ କୋଳରେ ଚିରକାଳପାଇଁ ଅଭୟ ଆଶ୍ରୟ ! !

ମହାତ୍ମା ଚନ୍ଦ୍ରଶେଖର ୧୯୦୪ ମେ ୧୧ ତାରିଖ ଶନିବାର ଦିନ ଏଗାରଟା ବେଳେ ତାଙ୍କର ପ୍ରିୟ ଜନ୍ମଭୂମି

ଓଡ଼ିଶା ଛାଡ଼ି ଅମର ଧାମକୁ ଚାଲିଗଲେ । ସେଠାରେ ଦେବତା-ମାନଙ୍କ ଗହଣରେ ବସି ପଣ୍ଡିତ ଓଡ଼ିଶାର ଉଦ୍ଧାର ପାଇଁ କଣ କରୁଥିବେ କେଜାଣି; କିନ୍ତୁ ଓଡ଼ିଶା ତାଙ୍କପାଇଁ କଣ କରିଛି ?—

ଓଡ଼ିଶା କିଛି କରିନାହିଁ । କରିବା କଥା ଦୂରେ ଥାଉ—ଚିହ୍ନି ସୁଦ୍ଧା ପାରି ନାହିଁ । ଦେବତା ରୂପେ ପୂଜା କରିବା ତ ଦୂରର କଥା—'ଅପୂଜାଦେବତା' ସୁଦ୍ଧା କରି ପାରି ନାହିଁ । ତୁଳସୀଜଳ ରୂପେ ନିତି ସେବା କରିବା ତ ଦୂରର କଥା—'ଶ୍ମଶାନ ତୁଳସୀ' ସୁଦ୍ଧା କରି ପାରି ନାହିଁ ।

ହା ଦୁର୍ଭାଗ୍ୟ ! ହା ଦୁର୍ଭାଗ୍ୟ ! ଓଡ଼ିଶା ଦେବତାର ପୂଜା କରିବାକୁ ଜାଣିବ କେଉଁ ଦିନ ? ମହାପୁରୁଷର ମହତ୍ତ୍ୱ ଦେଖି-ବାକୁ ଆଖିଆସିବ କେଉଁ ଦିନ ? ଗୁଣୀର ଆଦର କରିବାକୁ ଶିଖିବ କେଉଁଦିନ ? ରତ୍ନର ମୂଲ୍ୟ ପୁଣି ବୁଝିବ ବା କେଉଁ ଦିନ ?

ଏ ପ୍ରଶ୍ନର ଉତ୍ତର କିଏ ଦେବ ? ଆଜି ଓଡ଼ିଶାର କିନ୍ତୁ ଚୈତନ୍ୟ ଆସିଛି, ସେ ନିଜର ଭୁଲ ଏତେଦିନେ ନିଜେ ବୁଝି ପାରିଛି । ଚନ୍ଦ୍ରଶେଖରଙ୍କ ପରି ମହାପୁରୁଷଙ୍କୁ କ୍ଷଣକପାଇଁ ସୁଦ୍ଧା ଚିହ୍ନି ପାରିଲା ନାହିଁ—ବରଂ ତାଙ୍କୁ ଦାରୁଣ ଋଣଜାଲରେ ଛନ୍ଦି ଜୀବନଯାକ ଜଳେଇ ପୋଡ଼େଇ ମାରିଲା—ଏ ମହାପାତକର କଠିଣ ଫଳକୁ ଆଜି ଓଡ଼ିଶା ଅଙ୍ଗେ ଅଙ୍ଗେ ନିଭେଉଛି; ତାର ପ୍ରାୟଶ୍ଚିତ୍ତ ସରିବ କେଉଁ ଦିନ କେଜାଣି, ଭଗବାନଙ୍କୁ ଗୋଚର ! ଆଜି କେବଳ ସେ ନିଜ ବିଷ ଜାଳାରେ ନିଜେ ଦଗ୍ଧ ହୋଇ କରୁଣ ଚିତ୍କାର କରି ନୀରବରେ ଅଶ୍ରୁ ବୁହାଉଛି—

'ତୁମ୍ଭ ପରି ଜ୍ଞାନତରୁ ମଉଳିଲା ।
ଏହା ଦେଖିବାକୁ ବିଧି ଲେଖିଥିଲା

# ଉତ୍କଳ-ବୀର-ଚରିତମାଳା

## ପ୍ରଥମ ତରଙ୍ଗ

| | |
|---|---|
| ପ୍ରଥମ ଖଣ୍ଡ | ଚନ୍ଦ୍ରଶେଖର |
| ଦ୍ୱିତୀୟ ଖଣ୍ଡ | ଫକୀରମୋହନ |
| ତୃତୀୟ ଖଣ୍ଡ | ରାଧାନାଥ |
| ଚତୁର୍ଥ ଖଣ୍ଡ | ସୁଢ଼ଲଦେବ |
| ପଞ୍ଚମ ଖଣ୍ଡ | ମଧୁସୂଦନ |
| ଷଷ୍ଠ ଖଣ୍ଡ | ରାମଚନ୍ଦ୍ରଭଞ୍ଜଦେବ |

ପ୍ରତ୍ୟେକର ମୂଲ୍ୟ ଚାରଅଣା

ଛଅ ଖଣ୍ଡର ମୂଲ୍ୟ ପାଞ୍ଚସିକା

## ଦ୍ୱିତୀୟ ତରଙ୍ଗ

| | |
|---|---|
| ପ୍ରଥମ ଖଣ୍ଡ | ଖାରବେଳ |
| ଦ୍ୱିତୀୟ ଖଣ୍ଡ | ଅନଙ୍ଗଭୀମଦେବ |
| ତୃତୀୟ ଖଣ୍ଡ | କପିଳେନ୍ଦ୍ରଦେବ |
| ଚତୁର୍ଥ ଖଣ୍ଡ | ପୁରୁଷୋତ୍ତମଦେବ |
| ପଞ୍ଚମ ଖଣ୍ଡ | ପ୍ରତାପରୁଦ୍ରଦେବ |
| ଷଷ୍ଠ ଖଣ୍ଡ | ମୁକୁନ୍ଦଦେବ |

ପ୍ରତ୍ୟେକର ମୂଲ୍ୟ ଛଅଅଣା

ଛଅଖଣ୍ଡର ମୂଲ୍ୟ ଏକଟଙ୍କା

*Printed by B. K. Kar, B. A. at the Saraswata Press, Cuttack.*